**Results of Chandamama—Camlin Colouring Contest No. 14 (Oriya)**

*1st Prize:* Satyanarayan Kar, Bhubaneswar-4. *2nd Prize:* Master Ramakrishna Sahoo, Bhubaneswar-751 006. *3rd Prize:* Rajendra Panigrahi, Sundargarh. *Consolation Prizes:* Asish Kri Das, Alabol; Rajib Kumar Rath, Cuttack-1; Tushar Kanti Acharya, Bhubaneswar-2; Mani K., Vizianagaram-2; Sunita Dash, Rourkela-5.



# ଶ୍ରଦ୍ଧାଞ୍ଜଳି



## ଶ୍ରୀ ବି. ଏଲ୍.ଏନ୍. ପ୍ରସାଦ

ଜନ୍ମ : ୧୨-୧୧-୧୯୩୪ : : ମୃତ୍ୟୁ : ୩୧-୫-୧୯୮୦

ଚନ୍ଦାମାମା ପ୍ରକାଶନୀର ସୂତ୍ରଧା ଶ୍ରୀ ବି. ନାଗିରେଡ୍ଡୀଙ୍କ ଜ୍ୟେଷ୍ଠ ପୁତ୍ର ପ୍ରସାଦଙ୍କ ସଂସ୍ପର୍ଶରେ ଯିଏ ଆସିଥିଲା, ସିଏ ତାଙ୍କୁ କର୍ମୋତ୍ସାହର ଏକ ଉତ୍ସ ରୂପେ ଜାଣିଥିଲା । ଦାୟିତ୍ୱବୋଧ ସହ ନମ୍ରତାର କଭଳି ସୁନ୍ଦର ସମାବେଶ ହୋଇପାରେ, ସେ ଥିଲେ ତା'ର ଦୃଷ୍ଟାନ୍ତ ।

ମାତ୍ର ପଇଁଚାଳିଶ ବର୍ଷ ବୟସରେ ସେ ଅକସ୍ମାତ୍ ପରଲୋକ ଗମନ କଲେ । ତାଙ୍କ ସ୍ମୃତି ଆମ ଭିତରେ ଚିରସବୁଜ ହୋଇ ରହିବ ।

—ପ୍ରକାଶକ

ଆପଣଙ୍କ କେଶ
ଆବଶ୍ୟକ କରେ

# ରୀତାର ଯତ୍ନ

**ରୀତା** ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟାଧୁନିକ ମାନର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବଳାସମସ୍ତୀ ପ୍ରାକୃତିକ କେଶ ବଢ଼ାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀତା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଅଦଣ ପ୍ରସାଧନ ଦ୍ରବ୍ୟ ।







**ରୀତା** ମନୋହର କେଶ ବଢ଼ାଏ

ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି

ଡେଭଟୋ କୋ:, ବମ୍ବେ * କଲିକତା * ମାଡ୍ରାଜ

A CHANDAMAMA PUBLICATION

# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗିରେଡ୍ଡୀ

ଏ ସଂଖ୍ୟାର ବେତାଳକଥା ପ୍ରଣିଧାନଯୋଗ୍ୟ । ଅନେକ ସମୟରେ ଜଣକର ବ୍ୟବହାର ଉପରକୁ ଗୋଟିଏ ପ୍ରକାର ଦେଖାଯାଇପାରେ କିନ୍ତୁ ଭିତରେ ତା'ର ମତିଗତି ଭିନ୍ନ ହୋଇପାରେ । ଯଥା - କଥିତ ରାଜାଙ୍କ ପାଳିତପୁତ୍ର ।

## ଅମରବାଣୀ

ପରାପବାଦେ ବଧିରଃ ପରଚ୍ଛିଦ୍ରେଷ୍ୱଲୋଚନଃ ।
ପଙ୍ଗୁଃ କର୍ମସ୍ୱନାର୍ଯ୍ୟେଷୁ ଦୁଃସଂକଳ୍ପେଷ୍ୱଚେତନଃ ॥

ଯିଏ ଅନ୍ୟର ଅପବାଦ ଶୁଣିବାକୁ ହେଲେ ବଧିର ତୁଲ୍ୟ ହୁଏ, ଅନ୍ୟର ଛିଦ୍ରାନ୍ୱେଷଣ ଦଗରେ ଅନ୍ଧ, ଦୁଷ୍କର୍ମ କରିବା ବେଳେ ପଙ୍ଗୁ, ମନ୍ଦବୁଦ୍ଧି ପାଞ୍ଚିବା ବେଳେ ବୁଦ୍ଧିହୀନ ଭଳି ହୁଏ, ସେହି ଏକା ଚେତନାବାନ୍ ମଣିଷ ।

ବର୍ଷ : ୧୪ ଅଗଷ୍ଟ ୧୯୮୦ ଅଙ୍କ : ୨

ପ୍ରତିସଂଖ୍ୟା ଟ୧.୫୦ ବାର୍ଷିକ ମୂଲ୍ୟ : ଟ୧୮.୦୦




ପ୍ରଶ୍ନ : ସମ୍ପ୍ରତି ଜଣଙ୍କର ହୃତ୍‌ପିଣ୍ଡ ଅନ୍ୟ ଜଣକ ଦେହରେ ସ୍ଥାପନା କରାହୋଇଛି । ଜଣକର ମୁଣ୍ଡକୁ ମଧ୍ୟ ଅନ୍ୟ ଜଣକ ଦେହରେ ସ୍ଥାପନା କରିବାର ସମ୍ଭାବନା କଥା ଶୁଣାଯାଉଛି । ଏସବୁ ଘଟଣା ପରମ୍ପରାଗତ ଧର୍ମ-ବିଶ୍ୱାସରେ କିଛି ଆଞ୍ଚ ଆଣିବ ନାହିଁ ?

ଉତ୍ତର : ଧର୍ମ-ବିଶ୍ୱାସ ଦୁଇ ପ୍ରକାର । ସାଧାରଣତଃ ଗୁଡ଼ାଏ ବିଧି-ବିଧାନ କୁସଂସ୍କାର, ଅନ୍ଧବିଶ୍ୱାସ ଇତ୍ୟାଦିକୁ ଭିତ୍ତି କରି ଗୋଟାଏ ପ୍ରକାର ଧର୍ମ-ବିଶ୍ୱାସ ଚାଲୁ ହୋଇଥାଏ । କହିବା ବାହୁଲ୍ୟ, ଧର୍ମର ପ୍ରକୃତ ଲକ୍ଷ୍ୟଠାରୁ ଏହା ବହୁ ଦୂରରେ । ଏହି ଧରଣର ତଥାକଥିତ ଧର୍ମବିଶ୍ୱାସୀ ଲୋକେ ସବୁପ୍ରକାର ନୂଆତତ୍ତ୍ୱ ବା ଆବିଷ୍କାରକୁ ବିରୋଧ କରିଥାନ୍ତି ।

କିନ୍ତୁ ବାସ୍ତବ ଧର୍ମ-ବିଶ୍ୱାସ ଆଧ୍ୟାତ୍ମିକ ଅନୁଭୂତି ଭିତରୁ ଜାତ ହୋଇଥାଏ । ଯେଉଁମାନେ ଆଧ୍ୟାତ୍ମିକବାଦୀ, ସେମାନେ ଏ ସମଗ୍ର ବିଶ୍ୱକୁ ଭଗବାନଙ୍କର ଲୀଳାକ୍ଷେତ୍ର ରୂପେ ଦେଖନ୍ତି । ପ୍ରତ୍ୟେକ ନୂଆତତ୍ତ୍ୱ ବା ଆବିଷ୍କାର ସେମାନଙ୍କ ଆଖିରେ ଭଗବାନଙ୍କରହିଁ ଗୋଟିଏ ଗୋଟିଏ ଗୋପନ ଐଶ୍ୱର୍ଯ୍ୟର ଆତ୍ମପ୍ରକାଶ । ଏହି ଧରଣର ଧର୍ମବିଶ୍ୱାସୀମାନେ ଯେକୌଣସି ନୂତନ ସାଂସ୍କୃତିକ ବା ବୈଜ୍ଞାନିକ ତତ୍ତ୍ୱକୁ ସ୍ୱାଗତ କରିଥାନ୍ତି ।

ତେବେ ହୃଦୟ ମୁଣ୍ଡ ବଦଳ କଲା ଭଳି ବୈଜ୍ଞାନିକ ପଦକ୍ଷେପକୁ ରକ୍ଷଣଶୀଳମାନେ ବି ନାପସନ୍ଦ କରିବାର କାରଣ ନାହିଁ । ଶ୍ରୀଗଣପତିଙ୍କ ମୌଳିକ ମୁଣ୍ଡ ସ୍ଥାନରେ ହାତୀ ମୁଣ୍ଡ ଆସିବାର ପୌରାଣିକ ଦୃଷ୍ଟାନ୍ତ ରହିଛି । ପୁଣି ମୂଳ ବେତାଳ ପଞ୍ଚବିଂଶତିରେ ଗୋଟିଏ ଗଳ୍ପ ଅଛି : ଜଣେ ଯୁବତୀର ସ୍ୱାମୀ ଓ ଭାଇ ଘଟଣା କ୍ରମେ ନିଜ ନିଜ ମୁଣ୍ଡ କାଟି ପକାଇଛନ୍ତି ! ଦେବୀ କାଳୀଙ୍କ ନିର୍ଦ୍ଦେଶରେ ଯୁବତୀଟି ସେମାନଙ୍କ ମୁଣ୍ଡ ଓ ଦେହମାନ ଏକତ୍ର କରିଛି ଓ ଦେବୀ ପ୍ରାଣସଞ୍ଚାର କରିଛନ୍ତି । କିନ୍ତୁ ଯୁବତୀଟି ଭୁଲ୍ କ୍ରମେ ଭାଇ ଦେହରେ ସ୍ୱାମୀର ମୁଣ୍ଡ ଓ ସ୍ୱାମୀ ଦେହରେ ଭାଇର ମୁଣ୍ଡ ଆସିଛି । ବେତାଳର ପ୍ରଶ୍ନ ହେଲା କାହାକୁ ଯୁବତୀଟି ନିଜ ସ୍ୱାମୀ ରୂପେ ଗ୍ରହଣ କରିବ ? ବିକ୍ରମାଦିତ୍ୟଙ୍କ ଉତ୍ତର ହେଲା—ଯେଉଁ ଦେହରେ ତା' ସ୍ୱାମୀର ମୁଣ୍ଡ ରହିଛି । କାରଣ ମସ୍ତିଷ୍କହିଁ ବ୍ୟକ୍ତିତ୍ୱର ପରିଚୟ ।




ଦୁଷ୍ଟ ବିଲେଇ ଯୋଗୁ ଜରଠ ଗୃଧ୍ରର ମୃତ୍ୟୁ ହେଲା, କାଉ ସେ କଥା ହରିଣକୁ ଗପିସାରି କହିଲା, "ତେଣୁ ନ ବୁଝି ନ ଶୁଝି କୌଣସି ଅଜ୍ଞାତ ଜୀବକୁ ଆଶ୍ରା ଦେବା ଅନୁଚିତ ।"

ଏ ମନ୍ତବ୍ୟ ଶୁଣି ଶୃଗାଳ ଚିତ୍କାର କରି କହିଲା, "ଆଚ୍ଛା ତୁମ ସହ ଯେବେ ହରିଣର ବନ୍ଧୁତା ହେଲା, ସେତେବେଳେ କ'ଣ ହରିଣ ତୁମର ବଂଶ, ଗୋତ୍ର, ଇତିହାସ, ସବୁ ଜାଣିଥିଲା ? କଦାପି ନୁହେଁ । ପ୍ରଥମେ ପରିଚୟ ହେବା ଉତ୍ତାରୁ ଧୀରେ ଧୀରେ ବନ୍ଧୁତା ସ୍ଥାପନ ହୋଇଛି । ଯାହାର ମନ ବିଶେଷ ମହତ୍ ନୁହେଁ, ସେହି ସିନା ଇଏ ମୋ ନିଜର, ସିଏ ପର, ଏମିତି କଥାମାନ ଭାବେ, ଯିଏ ମହତ୍, ତା' ପାଇଁ ସାରା ବିଶ୍ୱ ତା' ପରିବାର । ଯେଉଁଠାରେ ବଡ଼ ଗଛ ନାହିଁ, ସେଠାରେ ଗବ ହିଁ ମହୀରୁହ ବୋଲାଏ । ସେମିତି ଅଜ୍ଞାନମାନଙ୍କ ଉପରେ ଅଳ୍ପଜ୍ଞାନୀ ନେତା ବୋଲାଏ । ଗୁଡ଼ । ଜାଣିରଖ, ମୁଁ ତୁମକୁ ବି ମୋର ବନ୍ଧୁ ଭଳି ଦେଖୁଛି ।"

ହରିଣ କହିଲା, "ଆହା, ଯୁକ୍ତିତର୍କରୁ କ'ଣ ମିଳିବ ? ସଭିଏଁ ସାଙ୍ଗ ହୋଇ ରହିବା । କେହି କାହାର ଶତ୍ରୁ ମିତ୍ର ହୋଇ ଜନ୍ମ ହୋଇ ନ ଥାଏ । କାର୍ଯ୍ୟକଳାପରୁ ଶତ୍ରୁ ମିତ୍ର ଜଣାପଡ଼େ ।"

"ବେଶ୍, ତାହାହିଁ ହେଉ ।" କାଉ କହିଲା । ତିନହେଁ ସେଇଠୁ ଏକତ୍ର ରହିଲେ ।

ଦିନେ ଶୃଗାଳ ହରିଣକୁ ଏକାନ୍ତରେ କହିଲା, "ବଣର ପଶ୍ଚିମ ସୀମାରେ ତୁମ ଆହାର ଉପଯୋଗୀ ସବୁଜ କ୍ଷେତ ଭରିରହିଛି । ଚାଲ, ତୁମକୁ ଦେଖାଇଦିଏ ।"

ହରିଣ ଶୃଗାଳ ସହ ଯାଇ ସେ କ୍ଷେତ

ଦେଖିଲା ଏବଂ ସବୁଦିନେ ଯାଇ ଫସଲ ଖାଇଲା । କ୍ଷେତର ମାଲିକ କ୍ରୁଦ୍ଧ ହୋଇ ଦିନେ ଜାଲ ବିଛାଇଲା । ହରିଣ ସେଥିରେ ପଡ଼ିଗଲା ।

"ଏ ବିପଦରୁ ବନ୍ଧୁ ଛଡ଼ା ମୋତେ କିଏ ରକ୍ଷା କରିବ ?" ହରିଣ ଏହା ଭାବି ଶୃଗାଳକୁ ଅପେକ୍ଷା କଲା । କିଛି ସମୟ ପରେ ଶୃଗାଳ ସେଠାରେ ପହଞ୍ଚି ହରିଣକୁ ସେ ଅବସ୍ଥାରେ ଦେଖି ବହୁତ ଖୁସୀ ହୋଇଗଲା ।

"କ୍ଷେତ ମାଲିକ ହରିଣକୁ ମାରି ମାଂସ ଖାଇବ । ସେ ଯେତିକି ଅଂଶ ଫୋପାଡ଼ିଦେବ, ସେତିକି ମୋ ପାଇଁ ଯଥେଷ୍ଟ ହେବ ।" ସେ ନିଜକୁ କହିଲା ।

ହରିଣ ଶୃଗାଳକୁ ଡାକି କହିଲା, "ଶୁଣୁଛ କ'ଣ ? ଜାଲ କାଟି ମୋତେ ମୁକୁଳାଅ । ବିପଦ ବେଳେ ମିତ୍ରର ମୂଲ୍ୟ, ଲଢ଼େଇ ବେଳେ ଯୋଦ୍ଧାର, ଦାରିଦ୍ର୍ୟ ବେଳେ ପତ୍ନୀର ମୂଲ୍ୟ ବୁଝାପଡ଼େ । ଆନନ୍ଦ ବେଳେ, ଦୁଃଖ ବେଳେ, ଅକାଳ ଓ ଅରାଜକତା ବେଳେ ତଥା ରାଜଦ୍ୱାର ଏବଂ ଶ୍ମଶାନରେ ଯିଏ ସାଥିରେ ଉପସ୍ଥିତ ରହି-ଥାଏ, ତାକୁହିଁ ବନ୍ଧୁ କୁହାଯାଏ ।"

ଶୃଗାଳ ଯାଇ ଜାଲ ଆଡ଼କୁ ଅନାଇ ବୁଝିଲା ଯେ ତାହା ବେଶ୍ ଶକ୍ତ; ହରିଣ ଖସିଯାଇ ପାରିବ ନାହିଁ । ସେ ତା'ପରେ କହିଲା, "ମିତ୍ର ! ଏ ଜାଲ କୌଣସି ଜୀବର ତନ୍ତୁରେ ତିଆରି ହୋଇଛି । ଆଜି ପବିତ୍ର ରବିବାରରେ ଏଥିରେ ଦାନ୍ତ ବସାଇବି କିପରି ? ତୁମେ କିଛି ମନେ



କର ନାହିଁ । କାଲି ଖୁବ୍ ସକାଳେ ଆସି ତୁମକୁ ଜାଲମୁକ୍ତ କରିବି ।"

ଏହା କହି ହରିଣର ଉତ୍ତରକୁ ଅପେକ୍ଷା ନ କରି ଶୃଗାଳ ପଳାଇଯାଇ ଗୋଟିଏ ବୁଦା ଭିତରେ ଲୁଚିଗଲା ।

ସନ୍ଧ୍ୟା ହେଲା । ହରିଣ ଆଶ୍ରୟସ୍ଥାନକୁ ନ ଫେରିବାର ଦେଖି କାଉ ଏଣେତେଣେ ତାକୁ ଖୋଜିବାକୁ ଲାଗିଲା ଓ ଶେଷରେ ଜାଲବନ୍ଧ ଅବସ୍ଥାରେ ଦେଖିଲା ।

"ତୁମର ଏ ଦଶା ହେଲା କେମିତି ?" କାଉ ପଚାରିଲା ।

"ଆରେ ଭାଇ, ମୋର ଦଶା ତୁମ ପରାମର୍ଶ ନ ମାନିବାର ଫଳ । ଯିଏ ହିତୈଷୀ ବନ୍ଧୁର କଥା ନ ଶୁଣେ, ତାକୁ ବହୁ ଯାତନା ଭୋଗିବାକୁ ପଡ଼େ ।" ହରିଣ ଉତ୍ତର ଦେଲା ।

"ସେ ଦୁଷ୍ଟ ଶୃଗାଳ ଗଲା କୁଆଡ଼େ ?" କାଉ ପ୍ରଶ୍ନ କଲା ।

"ମୋ ମାଂସ ଆଶାରେ ଏଇଠି କେଉଁଠି ଲୁଚି ରହିଥିବ ନିଶ୍ଚେ ।" ହରିଣ କହିଲା ।

"ମୁଁ ମୂଳରୁ ତୁମକୁ ଏଇ ଚେତାବନୀ ଦେଇ-ଥିଲି କି ଦୁଷ୍ଟକୁ ବିଶ୍ୱାସ ନାହିଁ । ଆମେ ଭଲ ବୋଲି ଆମ ପ୍ରତି ସମସ୍ତେ ଭଲ ଆଚରଣ କରିବେ, ଏମିତି ଭାବିବା ନିହାତି ଭୁଲ କଥା ।" କାଉ କହିଲା ।

ତା'ପରେ ଏଣେତେଣେ ଅନାଇ କାଉ ପୁଣି କହିଲା, "ଆରେ ଦୁଷ୍ଟ ଶୃଗାଳ ! ଏ ନିଷ୍ଠ



ହରିଣ-ବନ୍ଧୁ ବିରୁଦ୍ଧରେ ଏମିତି ଚକ୍ରାନ୍ତ କରିବା ପାଇଁ ତୋର ବିବେକ ବାଧା ଦେଲା ନାହିଁ କିପରି ? ଭଣ୍ଡ ! ତୁ ଭାବୁଛୁ କର୍ମଫଳ ବୋଲି କିଛି ନାହିଁ ?"

କାଉ ଟିକିଏ ରହିଯାଇ ପୁଣି କହିଲା, "ହେ ଧରିତ୍ରୀ ମାତଃ ! ଏ ଶୃଗାଳ ଭଳି ପାପୀକୁ ତୁମେ ସହ୍ୟ କରୁଛ କିପରି ?"

ତା'ପରେ ଟିକିଏ ଚିନ୍ତା କରି କାଉ ହରିଣକୁ କହିଲା, "ବନ୍ଧୁ, ଏ ଜାଲ କାଟିଲା ଭଳି ଶକ୍ତି ମୋର ନାହିଁ । ତେଣୁ ଭିନ୍ନ କୌଶଳ ଅବଲମ୍ବନ କରିବାକୁ ହେବ । ମୁଁ ଗଛ ଉପରୁ ଲକ୍ଷ୍ୟ ରଖିଥିବି । କ୍ଷେତ ମାଲିକ ଆସୁଥିବାର ଦେଖିବା ମାତ୍ରେ ଗୋଟାଏ ରାବ ଦେବି । ତୁମେ ସଙ୍ଗେ ସଙ୍ଗେ ମୃତ ଭଳି ପଡ଼ିରହିବାର ଅଭିନୟ କରିବ । ପୁଣି ମୁଁ ଯେତେବେଳେ ରାବିବି, ତୁମେ ସଙ୍ଗେ ସଙ୍ଗେ ଦୌଡ଼ିପଳାଇବ ।"

ଭୋର ବେଳକୁ କ୍ଷେତ ମାଲିକ ଆସୁଥିବାର ଦେଖି କାଉ ରାବିଲା । ସଙ୍ଗେ ସଙ୍ଗେ ହରିଣ ଚିତ୍‌ପଟାଙ୍ଗ୍ ମାରି ତଳେ ପଡ଼ିଗଲା । ଲୋକଟି ପାଖକୁ ଆସି ହରିଣର ସେ ଦଶା ଦେଖି କହିଲା, "ବଳେବଳେ ମରିଯାଇଛୁ ଦେଖୁଛି ! ବେଶ୍, ଭଲ କଥା ।"

ଏହା କହି ସେ ହରିଣକୁ ଜାଲରୁ ଅଲଗା କରିଦେଇ ଜାଲ ଗୋଟାଇବାରେ ମନ ଦେଲା । ତତ୍‌କ୍ଷଣାତ୍ କାଉ ଦ୍ୱିତୀୟଥର ପାଇଁ ରାବିଲା । ହରିଣ ଲମ୍ଫଦେଇ ଉଠିପଡ଼ି ଦେଲା ପ୍ରାଣମୂର୍ଚ୍ଛା ଦୌଡ଼ ।

କ୍ଷେତ ମାଲିକ ପାଖରେ ଖଣ୍ଡିଏ ଶକ୍ତ ଲାଠି ଥିଲା । ସେ ନିଜର ସମସ୍ତ ବଳ ଲଗାଇ ଲାଠିଟି ହରିଣ ଆଡ଼କୁ ଫୋପାଡ଼ିଲା । କିନ୍ତୁ ତାହା ହରିଣ ଦେହରେ ନ ବାଜି ବୁଦା ଭିତରେ ଲୁଚିଥିବା ଶୃଗାଳ ଦେହରେ ବାଜିଲା । ଶୃଗାଳର ପ୍ରାଣବାୟୁ ଉଡ଼ିଗଲା । ଶୃଗାଳର ମରଣାର୍ତ୍ତ ଚିତ୍କାର କାଉ ଶୁଣିପାରିଲା ।






[ ୨ ]

[କୁଣ୍ଡଳକଣା ଦ୍ୱୀପର ରାଜା ଚନ୍ଦ୍ରସେନ ଜନପ୍ରିୟ ହେବା ଲାଳସାରେ ପ୍ରଜାଙ୍କ କରଭାର ଅଧା କମାଇ-ଦେଲେ । ଫଳରେ ଶୀଘ୍ର ରାଜକୋଷ ଶୂନ୍ୟ ହୋଇଗଲା । ସେନାପତି ଅନ୍ୟ ଦେଶରୁ ଧନ-ସମ୍ପଦ ଲୁଟି ଆଣିବାର ପରାମର୍ଶ ଦେଲେ । ନୌବାହିନୀ ଯାତ୍ରାରମ୍ଭ କରିବା ମୁହୂର୍ତ୍ତରେ ଦକ୍ଷିଣ ଆକାଶରେ ଦେଖାଦେଲା ଗୋଟିଏ ଧୂମକେତୁ । ତାପରେ···]

ପୋତମାନେ କ୍ରମେ ସମୁଦ୍ର ଭିତରକୁ ଅଗ୍ରସର ହେଲେ । ସେତେବେଳେ ସମୁଦ୍ର ଶାନ୍ତ ଥିଲା । ପବନ ଅନୁକୂଳ ଭାବରେ ବହମାନ ହେଉଥିଲା ।

ଧୀରେ ଧୀରେ କୁଣ୍ଡଳକଣା ଦ୍ୱୀପର ଉପକୂଳ ଅଦୃଶ୍ୟ ହୋଇଗଲା । ଗମ୍ଭୀର ସମୁଦ୍ରରେ ପବନ ମଧ୍ୟ ଅପେକ୍ଷାକୃତ ତୀବ୍ର ଭାବରେ ବହମାନ ଥାଏ । ପୋତମାନଙ୍କ ଗତି ବଢ଼ିଗଲା ।

ସୈନିକମାନେ ଉତ୍ସାହରେ ବସିଥା'ନ୍ତି ଓ ନୌକାମାନ କ୍ରମେ ଗମ୍ଭୀର ସମୁଦ୍ର ଆଡ଼କୁ ଅଗ୍ରସର ହୋଇ ଚାଲିଥାନ୍ତି । କିନ୍ତୁ ସେନାପତି ସମରସେନ ତାଙ୍କ ଆସନରେ ବସି ଦକ୍ଷିଣ ଦିଗରେ ଦେଖାଦେଇଥିବା ଧୂମକେତୁଟି ଆଡ଼କୁ ଅନାଇ ରହିଥାନ୍ତି ।







ଶୁହୁଁ ଶୁହୁଁ ଖଣ୍ଡିଏ କଳାମେଘ ଦ୍ୱାରା ଧୂମକେତୁ ଢାଙ୍କିହୋଇଗଲା । କ୍ରମେ ସାରା ଆକାଶ ମେଘାଚ୍ଛନ୍ନ ହୋଇଗଲା ଏବଂ ପବନର ଗତି ତୀବ୍ର ହେଲା । ସମୁଦ୍ର ଆଲୋଡ଼ିତ ହେଲା । ଦେଖାଦେଲା ପ୍ରବଳ ତରଙ୍ଗମାଳା ।

ନୌକାଚାଳକମାନଙ୍କ ମୁଖ୍ୟ ମାଝିସର୍ଦ୍ଦାର ସେନାପତିଙ୍କ ନିକଟକୁ ଆସି କହିଲା, "ମହା-ମହିମ ସେନାପତି ! ସୈନ୍ୟମାନେ ଆତଙ୍କିତ ହେଲେଣି । କେହି କେହି କହୁଛନ୍ତି ଦ୍ୱୀପକୁ ଫେରିଯିବା ଉଚିତ ହେବ । ଆପଣଙ୍କ ମତ କ'ଣ ?"

ସମରସେନ ଥରେ ଆକାଶକୁ ଓ ଥରେ ସମୁଦ୍ର ଆଡ଼କୁ ଅନାଇସାରି କହିଲେ, "ଆମ ଦ୍ୱୀପର ଦେବୀ କୁଣ୍ଡଳିନୀଙ୍କର କୃପା ଯଦି ଥିବ, ତେବେ ପ୍ରକୃତି ଯଥା ଶୀଘ୍ର ଶାନ୍ତ ହେବ । ତୁମେ ଯାଇ ଖାଲି ସୈନ୍ୟମାନଙ୍କୁ ସାହସ ଦିଅ । କୁହ, ସେନାପତି ତୁମମାନଙ୍କଠାରୁ ବେଶୀ ବୁଝନ୍ତି । ତୁମେମାନେ ନିଶ୍ଚିନ୍ତ ରୁହ ।"

ମାଝିସର୍ଦ୍ଦାର ଚାଲିଗଲେ । କିନ୍ତୁ ଦୁଇଘଣ୍ଟା ଅତୀତ ହେବା ସତ୍ତ୍ୱେ ଅବସ୍ଥାରେ ପରିବର୍ତ୍ତନ ହେବାର କୌଣସି ସୂଚନା ମିଳିଲା ନାହିଁ । ଝଡ଼ତୋଫାନ ଆରମ୍ଭ ହୋଇଗଲା ।

ସେନାପତି ବାରଂବାର ଆକାଶକୁ ଅନାଉ-ଥାନ୍ତି ଓ ପୋତମାନଙ୍କ ଆଡ଼କୁ ହାତ ହଲାଇ ବୁଝାଇବାକୁ ଚେଷ୍ଟା କରୁଥା'ନ୍ତି ଯେ ଏ ଝଡ଼ରେ ଭୟର କାରଣ ନାହିଁ । କିନ୍ତୁ ଅଳ୍ପ ସମୟ ଭିତରେ ପୋତମାନ ଆଉ ତାଙ୍କ ଆଖିକୁ ଦେଖାଗଲେ ନାହିଁ ।

କ୍ରମେ ତୋଫାନ ପ୍ରଚଣ୍ଡ ରୂପ ନେଲା । ସୈନିକମାନେ ସାହସ ହରାଇଲେ । ଏଣେତେଣେ ଯିଏ ଯାହା ପାଇଲା ତାକୁ ଆବୋରି ଧରି ସେ ସ୍ଥିର ରହିବାକୁ ଚେଷ୍ଟା କଲା ।

ଅନ୍ଧକାର ଗାଢ଼ ହେବାରୁ ନାବିକମାନେ କିଛି ଦେଖିପାରୁ ନ ଥାନ୍ତି । ନୌକାମାନ ବି ସେମାନଙ୍କ ଆୟତ୍ତରେ ରହୁ ନ ଥାନ୍ତି । ପରସ୍ପର ଧକ୍କାଧକ୍କି ହେଉଥାନ୍ତି । ଅବଶ୍ୟ ସମର-



ସେନ ଯେଉଁ ନୌକାରେ ବସିଥିଲେ, ତାହା ଖୁବ୍ ମଜବୁତ । ଅନ୍ୟ ନୌକାମାନ ସେଥିରେ ଧକ୍କା ଦେଲେ ବି ତା'ର କୌଣସି କ୍ଷତି ହେଉ ନ ଥିଲା । କିନ୍ତୁ ତହିଁ ଭିତରକୁ ହାବୁକା ହାବୁକା ପାଣି ପଶିଆସୁଥିଲା ।

ସମରସେନ ଯଥା ସମ୍ଭବ ନିଜ ମନୋଭାବ ଗୋପନ କରି ବାହାରକୁ ଦୃଢ଼ ଦିଶୁଥାନ୍ତି । କିନ୍ତୁ ତାଙ୍କୁ ଲକ୍ଷ୍ୟ କରୁଛି କିଏ !

ସମରସେନ ନିଜ ପୋତରେ ଥିବା କୁଣ୍ଡଳମୀ ଦେବୀଙ୍କ ମୂର୍ତ୍ତି ଆଗରେ ହାତଯୋଡ଼ି ହୋଇ ପ୍ରାର୍ଥନା କରୁଥାନ୍ତି । କେତୋଟି ନୌକା ବୁଡ଼ି-ଗଲେଣି, କେତେ ସୈନିକ ମଲେଣି, ସେସବୁ ଝଡ଼ ନ ଥମିବା ଯାଏ ଏବଂ ସକାଳ ନ ହେବା ଯାଏ ବୁଝିବାର ଉପାୟ ନ ଥିଲା ।

ସକାଳ ହେବା ବେଳକୁ ଝଡ଼ବର୍ଷା ଥମି-ଯାଇଥାଏ । ସମରସେନ ସେ ପର୍ଯ୍ୟନ୍ତ ଦେବୀ-ମୂର୍ତ୍ତି ଆଗରେ ବସିଥା'ନ୍ତି । ସୈନ୍ୟମାନେ ତାଙ୍କୁ ଡାକି କହିଲେ, "ସେନାପତି ମହୋଦୟ, ଏଥର ପ୍ରକୃତି ଶାନ୍ତ ହେଲାଣି । ଭବିଷ୍ୟତ କର୍ମପନ୍ଥା ସ୍ଥିର କରନ୍ତୁ ।"

ସମରସେନ ଠିଆ ହୋଇ ସମୁଦ୍ର ଭିତରକୁ ଏଣେତେଣେ ଅନାଇଲେ । ପ୍ରାୟ ଅଧାଅଧି ନୌକା ଯେ ବୁଡ଼ିଯାଇଛି, ତାହା ସେ ଅନୁମାନ କରିପାରିଲେ । ଯେଉଁକେନୌକା ବର୍ତ୍ତିରହିଥିଲେ, ସେଗୁଡ଼ିକ ଏଣେତେଣେ ପରସ୍ପର ବିଚ୍ଛିନ୍ନ ହୋଇ ଭାସୁଥିଲେ ।

ସେନାପତି ବୁଝିଲେ, ଅନେକ ସୈନ୍ୟଙ୍କର ସଲିଳସମାଧି ଘଟିଛି । ଯେଉଁମାନେ ବଞ୍ଚିଛନ୍ତି, ସେମାନେ କ୍ଲାନ୍ତ ଏବଂ ଭୟଭୀତ ହୋଇଯାଇ-ଥିବା ସ୍ୱାଭାବିକ । ପ୍ରଥମେ ସେମାନଙ୍କୁ ଏକାଠି କରି ସେମାନଙ୍କ ମନୋବଳ ଫେରାଇଆଣିବା କର୍ତ୍ତବ୍ୟ ବୋଲି ସେ ବୁଝିଲେ । ଛୋଟ ନୌକା-ମାନ ପଠାଇ ଦୂରରେ ଦୂରରେ ଭାସୁଥିବା ପୋତମାନଙ୍କୁ ନିଜ ପୋତ ପାଖକୁ ଉଡ଼ାଇ-ଆଣିଲେ । ସୈନିକମାନେ ତାଙ୍କ ପୋତକୁ ଆସି ତାଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରି ନୀରବରେ



ଏକାଗ୍ର ଭାବେ ଦଣ୍ଡାୟମାନ ହେଲେ ।

ସେନାପତି ସେମାନଙ୍କୁ ଭଲ ଭାବରେ ଲକ୍ଷ୍ୟ କରି ଦେଖିଲେ । ସମସ୍ତେ ଅବସନ୍ନ ଦିଶୁଥିଲେ । ଘରୁ ବାହାରିବାର ଅଳ୍ପ ସମୟ ଭିତରେ ସେମାନଙ୍କର ଯେଉଁ ଅଭିଜ୍ଞତା ହେଲା, ସେଥିରେ ସେମାନଙ୍କ ଦ୍ୱାରା କେତେଦୂର ଉଦ୍ଦେଶ୍ୟ ସାଧିତ ହୋଇପାରିବ, ତାହା ସନ୍ଦେହଜନକ ବୋଲି ସେ ବୁଝିଲେ ।

ସେମାନଙ୍କ ସହ କଥାବାର୍ତ୍ତା କରି ସେ ବୁଝିଲେ କି ସେମାନେ ସମୁଦ୍ରରେ ବେଶୀ ସମୟ ରହିବାର ପକ୍ଷପାତୀ ନୁହନ୍ତି । କିନ୍ତୁ ପାଖରେ ସ୍ଥଳଭାଗ ଅଛି କି ନାହିଁ, ଅନ୍ଧକାର ଭିତରେ ଝଡ଼ ସେମାନଙ୍କୁ କେଉଁ ଦିଗକୁ ଠେଲି ନେଇଯାଇଛି, ସେ କଥା ସେନାପତି ବୁଝିପାରୁ ନ ଥିଲେ । ସେ ଜଣେ ସୈନିକକୁ ମାସ୍ତୁଲ ଆରୋହଣ କରି ଦୂରରେ କୌଣସି ଦ୍ୱୀପ ବା ଦେଶର ଭୂଭାଗ ଦିଶୁଛି କି ନା ଦେଖିବାକୁ କହିଲେ ।

ସୈନିକଟି ମାସ୍ତୁଲ ଆରୋହଣ କଲା । ସମସ୍ତଙ୍କ ଦୃଷ୍ଟି ତାହା ଉପରେ ନିବଦ୍ଧ ହୋଇଥାଏ । ସେ କିଛିକ୍ଷଣ ଉତ୍ତାରୁ କହିଲା, "ଆଖପାଖରେ ଭୂଭାଗ ଦିଶୁନାହିଁ, ତେବେ ପୂର୍ବ ଦିଗରେ କେତୋଟି ପକ୍ଷୀ ଉଡ଼ୁଥିବାର ଦେଖିପାରୁଛି ।"



"କୁଣ୍ଡଳମୀ ଦେବୀଙ୍କର ଜୟ !" ସେନାପତି ସୈନିକର କଥା ଶୁଣି ଉତ୍ସାହଭରେ କହିଲେ । ସୈନ୍ୟଦଳ ମଧ୍ୟ ତାଙ୍କ ଉତ୍ସାହ ସହ ତାଳ ରଖି ସେହିଭଳି ଧ୍ୱନି ଦେଲେ ।

ସେନାପତି ପୂର୍ବଦିଗକୁ ଅଗ୍ରସର ହେବା ପାଇଁ ସବୁ ପୋତକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ଦୁଇ-ପ୍ରହର ହେବା ସତ୍ତ୍ୱେ କାହିଁ କୌଣସି ଉପକୂଳ ଆଖିରେ ପଡ଼ିଲା ନାହିଁ । ସୈନିକମାନଙ୍କର ଉତ୍ସାହରେ ପୁଣି ଭଟ୍ଟା ପଡ଼ିବା ଆରମ୍ଭ ହେଲା ।

ତା'ପରେ ସୂର୍ଯ୍ୟାସ୍ତ ସମୟ ଯେତିକି ଯେତିକି ନିକଟତର ହେଲା, ସୈନିକମାନଙ୍କର ଆତଙ୍କ ସେତିକି ସେତିକି ବଢ଼ିବାକୁ ଲାଗିଲା । ଅନ୍ଧକାର ହେବା ବେଳକୁ ପୁଣି କାଳେ ଝଡ଼ ଆସିବ, ଏହାହିଁ ଥିଲା ସେମାନଙ୍କର ଆତଙ୍କର କାରଣ ।

କିନ୍ତୁ ହଠାତ୍ ପୁଣି ମାସ୍ତୁଲ ଉପରକୁ ଉଠି-ଥିବା ସୈନିକଟି ପାଟି କରି କହିଲା, "ହେଇଟି ଉପକୂଳ ଦିଶୁଛି । ବେଶୀ ଦୂର ନୁହେଁ ।"

ସମସ୍ତେ କରତାଳି ଦେଲେ ।

ନାବିକମାନେ ଯଥାସାଧ୍ୟ ବେଗରେ ପୋତ ଚଳାଇଲେ । ସୂର୍ଯ୍ୟାସ୍ତ ହେବାର ଅଳ୍ପ ସମୟ ପରେ ପୋତମାନେ ଉପକୂଳରେ ପହଞ୍ଚିଲେ ।

ସମରସେନ ଅନୁମାନ କରିନେଲେ ଯେ ତାହା ଏକ ଦ୍ୱୀପ । ସୈନିକମାନେ ଜାହାଜ ଛାଡ଼ି ଉପକୂଳକୁ ଯିବା ସକାଶେ ବ୍ୟଗ୍ର ହେଉ-ଥା'ନ୍ତି । କିନ୍ତୁ ସମରସେନ କଠୋର କଣ୍ଠରେ ଶୁଣାଇ ଦେଲେ, "ସାବଧାନ ! ମୋ ଅନୁମତି ବିନା କେହି କୂଳକୁ ଯିବେ ନାହିଁ ।"

ଦ୍ୱୀପଟି ଥାଏ ପାହାଡ଼ପର୍ବତ ଓ ଅରଣ୍ୟରେ ଭରି । ସମରସେନ ଯେମିତି ଅସ୍ପଷ୍ଟ ଭାବରେ କେତେକ ଭୀଷଣ ଜୀବଜନ୍ତୁ ବୁଲୁଥିବାର ଦେଖି-ପାରିଲେ । ଯଥେଷ୍ଟ ସତର୍କ ନ ହୋଇ ସେ ଦ୍ୱୀପ ଭିତରକୁ ଯିବା ଉଚିତ ହେବ ନାହିଁ ବୋଲି ସେ ବୁଝିଲେ ।

ସେ ସୈନ୍ୟମାନଙ୍କୁ ଦୁଇ ଦଳରେ ଭାଗ କରି ଗୋଟିଏ ଦଳକୁ ଛୋଟ ଛୋଟ ନୌକା ଦ୍ୱାରା ପୋତରୁ କୂଳକୁ ପଠାଇ ଅବସ୍ଥା ଅନୁଧ୍ୟାନ



କରିବାକୁ ଚାହିଁଲେ । ଅବସ୍ଥା ଅନୁକୂଳ ହୋଇ-ଥିଲେ ଡେଣିକ ସବୁ ସୈନିକ ଯାଇପାରିବେ ।

କିନ୍ତୁ ପ୍ରଶ୍ନ ହେଲା ପ୍ରଥମେ ଦ୍ୱୀପକୁ ଯିବ କିଏ ? ପୂରା ଅପରିଚିତ ଦ୍ୱୀପକୁ ଯାଇ ସେଠାକାର ଅବସ୍ଥା ଅନୁଧ୍ୟାନ କରି, ଦରକାର ହେଲେ ବିପଦ ଏଡ଼ାଇ ପୁଣି ପୋତକୁ ଫେରି ଆସିବା ସକାଶେ ଖାଲି ସାହସ ଓ ପରାକ୍ରମ ନୁହେଁ, ଯଥେଷ୍ଟ ବୁଦ୍ଧି ଏବଂ କ୍ଷିପ୍ରତା ଥିବା ଆବଶ୍ୟକ ।

ସମରସେନ ଦେଖିଲେ ସେ ନିଜେ ଯିବାହିଁ ସବୁଠାରୁ ଯୁକ୍ତିଯୁକ୍ତ । ସେ କେତେଜଣ ଅଭିଜ୍ଞ ଓ ସାହସୀ ସୈନିକଙ୍କୁ ସାଥିରେ ଧରି ଦ୍ୱୀପ ଆଡ଼କୁ ଅଗ୍ରସର ହେଲେ । ଅଳ୍ପ ସମୟ ଭିତରେ ସେମାନଙ୍କ ନୌକା ଦ୍ୱୀପରେ ଲାଗିଲା ।

ଉପକୂଳ ନିର୍ଜନ । କୌଣସି ମଣିଷ ଆଖ-ପାଖରେ ଥିବା ଭଳି ମନେ ହେଉ ନ ଥାଏ । ତଥାପି ସମରସେନ ତରବାରି କୋଷମୁକ୍ତ କରି ଧରିଥାନ୍ତି ଓ ସନ୍ତର୍ପଣରେ ଅଗ୍ରସର ହେଉଥାନ୍ତି । କେହି ଗଛଲତା ଭିତରେ ଲୁଚିରହି ହଠାତ୍ ଆକ୍ରମଣ କରିବା କ'ଣ ଅସମ୍ଭବ ?

ହଠାତ୍ ଗୋଟାଏ ବିକଟ ଗର୍ଜନ ସେମାନଙ୍କ କାନରେ ପଡ଼ିଲା । ସେମାନେ ଠିଆହୋଇ ରହିଲେ । ସମରସେନଙ୍କର ଜଣେ ଅନୁଚର କହିଲା, "ଆଜ୍ଞା ! ଏଭଳି ବିକଟ ଭୟାବହ ରଡ଼ି ମୁଁ କାହିଁ କେବେ ଶୁଣି ନ ଥିଲି । ଏହା ମଣିଷର ନା କୌଣସି ଅଦ୍ଭୁତ ଜାନୁଆରର, ତାହା କହିବା ସମ୍ଭବ ନୁହେଁ ।"

"ଭୟ ନାହିଁ । ମୋତେ ଅନୁସରଣ କର ।" କହିଲେ ସମରସେନ । ତରବାରି ଉଦ୍ୟତ ରଖି ସେ ଅଗ୍ରସର ହେବାକୁ ଲାଗିଲେ । ସମସ୍ତେ ଆସି ଗୋଟିଏ ହ୍ରଦକୂଳରେ ପହଞ୍ଚିଲେ । ସେଠାରେ ବଣ ବେଶ୍ ନିବିଡ଼ । ହ୍ରଦକୂଳରେ ସେମାନେ ଯାହା ଦେଖିଲେ, ସେଥିରେ ସ୍ତମ୍ଭୀ-ଭୂତ ଭାବରେ ଠିଆହୋଇ ରହିବା ଛଡ଼ା ଅନ୍ୟ ଉପାୟ ନ ଥିଲା ।

ଦୁଇଟି ଭୀଷଣାକୃତି ଜୀବ ପରସ୍ପର ଲଢ଼ୁ-

ଥାନ୍ତି । ଅଦୂରରେ ଠିଆ ହୋଇ ଆଉ କେତୋଟି ଜୀବ ସେ ଦୃଶ୍ୟ ଦେଖୁଥାନ୍ତି । ପାର୍ଶ୍ୱ-ବର୍ତ୍ତୀ ଗୋଟାଏ ବଡ଼ ଗଛ ଉପରେ ବସି ତିନୋଟି ନରବାନର ସେ ଦୃଶ୍ୟ ଦେଖିବା ସଙ୍ଗେସଙ୍ଗେ ସେ ବିଷୟରେ ନିଜ ଭାଷାରେ କିଛି କଥାବାର୍ତ୍ତା ହେଉଥାନ୍ତି । ସେମାନଙ୍କ ହାତରେ ରହୁଥାଏ ପଥର ନିର୍ମିତ ଅସ୍ତ୍ର ।

ସମରସେନ ନିଜ ଅନୁଚରମାନଙ୍କୁ କହିଲେ, "ଏଭଳି ଜୀବ ବହୁ ଲକ୍ଷ ବର୍ଷ ତଳେ ପୃଥିବୀରେ ରହୁଥିଲେ ବୋଲି ଶୁଣାଯାଏ । ଏମାନେ ପୂରା ପଶୁ ନୁହନ୍ତି । ମଣିଷର ନିକଟବର୍ତ୍ତୀ ପ୍ରାଣୀ ।"

ଅନୁଚରମାନେ ସେନାପତି ସମରସେନଙ୍କ ବ୍ୟାଖ୍ୟା ଶୁଣିଲେ । କିନ୍ତୁ ଏଭଳି ଦ୍ୱୀପକୁ ଆସି ଲାଭ କ'ଣ ହେଲା, ସେ କଥା ସେମାନେ ବୁଝିପାରୁ ନ ଥା'ନ୍ତି । ଅନ୍ୟ ରାଜ୍ୟରୁ ଧନ-ସମ୍ପତ୍ତି ପାଇବା ଆଶାରେ ଅଭିଯାନ ଆରମ୍ଭ ହୋଇଥିଲା । ଏ ଦ୍ୱୀପରେ ଅଛି କ'ଣ ?

ସମରସେନ ଯେ ସେହି ଧରଣର ଚିନ୍ତାରେ ପୀଡ଼ିତ ନ ଥିଲେ, ତାହା ନୁହେଁ । ତେବେ ସେ ମନକଥା ପ୍ରକାଶ କରୁ ନ ଥିଲେ । ଧନ-ସମ୍ପଦ ବିନା ସ୍ୱଦେଶକୁ ଗଲେ ସମସ୍ତେ ହସିବେ । ଏଣେ ପୁଣି ଅଧା ସୈନିକଙ୍କୁ ସମୁଦ୍ରରେ ବିସର୍ଜନ ଦିଆହୋଇଛି । ଏପରି ପରିସ୍ଥିତିରେ ତାଙ୍କ କର୍ତ୍ତବ୍ୟ କ'ଣ ?

ଦୁଇ ଜୀବଙ୍କ ଲଢ଼େଇ ଓ ଆର୍ତ୍ତନାଦ ଆହୁରି ଭୟଙ୍କର ହେଲା । ହାତୀଯୁଥଟିଏ ଡରିଯାଇ ଏଣେତେଣେ ଦୌଡ଼ିବାକୁ ଆରମ୍ଭ କରିଦେଲେ । ତହିଁଭିତରୁ ଗୋଟାଏ ପ୍ରକାଣ୍ଡ ହାତୀ ସେନା-ପତିଙ୍କ ଦଳ ଆଡ଼କୁ ମାଡ଼ି ଆସିଲା । ସେନାପତି ଯଥା ସମୟରେ ନିଜ ଅନୁଚରମାନଙ୍କୁ ଗଛ ଚଢ଼ିଯିବା ପାଇଁ ନିର୍ଦ୍ଦେଶ ଦେଲେ ।

ପରମୁହୂର୍ତ୍ତରେ ସେମାନେ ଦେଖିଲେ, ଦୁଇଟି ଭୟଙ୍କର ସିଂହ ହାତୀ ଉପରକୁ କୁଦିପଡ଼ିଲେ ।

(କ୍ରମଶଃ)





## ବିସ୍ମର-ବିଭ୍ରାଟ ?

ରାଜା ବିକ୍ରମାର୍କ ପୁନର୍ବାର ଶ୍ମଶାନସ୍ଥିତ ବୃକ୍ଷଟି ପାଖକୁ ଲେଉଟିଆସିଲେ । ସେହି ନିର୍ଜନ ବର୍ଷାମୁଖର ରାତିରେ ଅଶରୀରୀମାନଙ୍କ ଅଟ୍ଟହାସ୍ୟ ଏବଂ ଘନ ଘନ ବଜ୍ରପାତ ପ୍ରତି ଭ୍ରୂକ୍ଷେପ ନ କରି ସେ ପୁଣି ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣି କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ରାଜନୀତି ସମ୍ପର୍କରେ ତୁମର ଧାରଣା ଯଥେଷ୍ଟ ପାକଳ ହୋଇଥିବା ସ୍ୱାଭାବିକ । କିନ୍ତୁ ଥରେ ଥରେ ଜଣେ ଜଣେ ରାଜାଙ୍କ ବ୍ୟବହାର ବଡ଼ ରହସ୍ୟ-ମୟ ମନେ ହୁଏ । ରାଜା ଶୁଭେନ୍ଦ୍ର କଥା ଧର । କହୁଛି ସେ କଥା, ଶୁଣ । ଶୁଣିଲେ ଶ୍ରମର ଲାଘବ ମନେ ହେବ ।"

ବେତାଳ କହିଲା : ଶୁଭେନ୍ଦ୍ର ଜଣେ ରାଜ-ବଂଶୀୟ ଯୁବକ । ସେ ପ୍ରତାପଶାଳୀ ହୋଇ ସୋମପୁରର ରାଜା ରାଜଶେଖରଙ୍କ ବିରୁଦ୍ଧରେ

ବେତାଳ କଥା

ବିଦ୍ରୋହ କରି ତାଙ୍କୁ ହରାଇଦେଲେ । ରାଜା ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେଲେ । ରାଣୀ ରାଜାଙ୍କ ମୃତ୍ୟୁ ଖବର ପାଇ ଚେତା ହରାଇଲେ । ଚେତା ଆଉ ଫେରିଲା ନାହିଁ । ରାଜଦମ୍ପତିଙ୍କର ଗୋଟିଏ ବୋଲି ଶିଶୁସନ୍ତାନ ଥିଲା । ଶୁଭେନ୍ଦ୍ର ରାଜା ହୋଇ ସେ ଶିଶୁକୁ ନିଜ ପୁଅ ଭଳି ପାଳିଲେ । ତା'ର ନାମ ଦେଲେ ବିଜୟ ।

ସେତେବେଳେ ଶୁଭେନ୍ଦ୍ରଙ୍କର ନିଜର ସନ୍ତାନ-ସନ୍ତତି ନ ଥିଲେ । କିନ୍ତୁ ପରେ ପରେ ତାଙ୍କର ଗୋଟିଏ କନ୍ୟାସନ୍ତାନ ଜାତ ହେଲା । ଲୋକେ ଭାବିଲେ ତେଣିକି ରାଜା ବିଜୟ ପ୍ରତି ତାଚ୍ଛଲ୍ୟ ଭାବ ଦେଖାଇବେ । କିନ୍ତୁ ତାହା ହେଲା ନାହିଁ । ରାଜା ଶୁଭେନ୍ଦ୍ରଙ୍କର ବିଜୟ ପ୍ରତି ମନୋଭାବରେ କୌଣସି ପରିବର୍ତ୍ତନ ହେଲା ନାହିଁ । ସେ ନିଜ କନ୍ୟା ଓ ବିଜୟକୁ ଏକା ଆଖିରେ ଦେଖୁଥାନ୍ତି ।

କ୍ରମେ ଦୁଇ ଶିଶୁ ବଡ଼ ହେଲେ । ରାଜ-କନ୍ୟାଙ୍କ ବିବାହବୟସ ହେବାରୁ ରାଜା ତାଙ୍କ ସ୍ୱୟଂବରର ବ୍ୟବସ୍ଥା କରି ଘୋଷଣା କଲେ କି ଯିଏ ତାଙ୍କ ଜାମାତା ହେବ ସେ ରାଜ୍ୟରୁ ଅଧା ପାଇବ ।

ଏ ଘୋଷଣାରେ ବିଜୟ ମନରେ କୌଣସି ମନ୍ଦ ପ୍ରତିକ୍ରିୟା ହେଲା ନାହିଁ । କିନ୍ତୁ ସେତେ-ବେଳେ ନୂଆ କରି ସେନାପତି ବନିଥିବା ଭୂପତି ବିଜୟକୁ ଡାକି ଏକାନ୍ତରେ କହିଲା, "ବନ୍ଧୁ! ତୁମର ଦୁର୍ଭାଗ୍ୟ ଦେଖି ମୋତେ ବହୁତ ଦୁଃଖ



ଲାଗୁଛି ।" ବିଜୟ ପଚାରିଲେ, "ମୋର ଦୁର୍ଭାଗ୍ୟ ବୋଇଲେ ?" ଭୂପତି ଉତ୍ତର ଦେଲା, "ଦୁର୍ଭାଗ୍ୟ ନୁହେଁ ? ମୁଁ ଶୁଣିଥିଲି ରାଜା ତୁମ ପାଇଁ ପୂରା ରାଜ୍ୟ ରଖିଛନ୍ତି । ଯେତେ ହେଲେ ଏ ରାଜ୍ୟ ତୁମ ପିତାଙ୍କର ଥିଲା । ଆଜି ଅଧା ରାଜ୍ୟ ସେ ଜାମାତାଙ୍କୁ ଦେବାକୁ ସ୍ଥିର କଲେ । କାଲି ହୁଏତ ବାକି ଅଧକ ବି ଆଉ କାହାକୁ ଦେଇଦେବେ । ତୁମେ ବାଲବାଲ ଅନାଇଥିବ ।"

"ମୋର କର୍ତ୍ତବ୍ୟ ତେବେ କ'ଣ ?" ବିଜୟ ପଚାରିଲେ । କଣ୍ଠସ୍ୱର ନମ୍ର କରି ଭୂପତି ତାଙ୍କୁ କହିଲେ, "ଟିକିଏ ସାହସ ସଞ୍ଚୟ କରି କାମ କଲେ ପୂରା ରାଜ୍ୟ ତୁମର ହୋଇଯିବ । ମୁଁ ତୁମକୁ ସବୁମତେ ସାହାଯ୍ୟ କରିବାକୁ ପ୍ରସ୍ତୁତ ।" ତା'ପରେ ସେନାପତି ଭୂପତି ନିଜ ଯୋଜନା ଉପସ୍ଥାପିତ କଲେ ।

ବିଜୟ ଟିକିଏ ଚିନ୍ତା କରି କହିଲେ, "କିନ୍ତୁ ଆମ ଷଡ଼ଯନ୍ତ୍ର ଯଦି ଜଣା ପଡ଼ିଯାଏ ?" ଭୂପତି ଉତ୍ତର ଦେଲେ, "ତେବେ ଆମେ ପଡ଼ୋଶୀ ରାଜ୍ୟ ଗୋପାଳପୁରକୁ ପଳାଇଯିବୁ । ସେ ରାଜ୍ୟର ରାଜା ମଣିସିଂହ ରାଜା ଶୁଭେନ୍ଦ୍ରଙ୍କର ଘୋର ଶତ୍ରୁ । ତାଙ୍କ ସହାୟତାରେ ଆମେ ଶୁଭେନ୍ଦ୍ରଙ୍କୁ ଜବଦ କରିବା ।"

"ଏହା ବେଶ୍ ଯୁକ୍ତିଯୁକ୍ତ ପ୍ରସ୍ତାବ । ନଅର ଭିତରୁ ଗୋଟିଏ ଗୋପନ ସୁଡ଼ଙ୍ଗ ପଥ ବଣ ଭିତରପାଏ ଯାଇଛି । ଆମେ ସେହି ପଥରେ ପଳାଇଯିବା ।" ବିଜୟ ପ୍ରସ୍ତାବ ଦେଲେ ।





ଭୂପତି ଖୁସୀ ହୋଇ କହିଲେ, "ସାବାସ୍ !"

ସନ୍ଧ୍ୟାବେଳେ ରାଜା ଉଦ୍ୟାନରେ ପଦଚାରଣା କରୁଥିଲେ । ହଠାତ୍ ଗୋଟିଏ କପୋତ ଆସି ତାଙ୍କ କାନ୍ଧରେ ବସିଗଲା । ତାହା ନଅରର ପାଳିତ କପୋତ । ତା' ଗୋଡ଼ରେ ଛୋଟ ଚିଠିଟିଏ ବନ୍ଧା ହୋଇଥିଲା । ରାଜା ତାକୁ ଖୋଲି ପଢ଼ିଲେ, "ସାବଧାନ । ଆଜି ରାତି ବିପଜ୍ଜନକ ।"

ରାଜା ତତ୍କ୍ଷଣାତ୍ ଅନ୍ତଃପୁର ଯାଇ ନିଜ ଦେହରକ୍ଷୀମାନଙ୍କୁ ସତର୍କ କରିଦେଲେ । କହିବା ବାହୁଲ୍ୟ, ନିଜେ ନିଦର ଛଳନା କରି ସେ ବିଛଣାରେ ପଡ଼ିରହିଲେ । ମଝିରାତି ବେଳକୁ ଲୁଚିରହିଥିବା ଘାତକ ନିଜ କାମ କରିବା ସକାଶେ ଉଦ୍ୟତ ହୋଇ ଧରାପଡ଼ିଗଲା । ଧମକ ଖାଇ ସେ କହିଲା ଯେ ତାକୁ ନିଯୁକ୍ତ କରିଥିଲେ ସେନାପତି ଭୂପତି ତଥା ରାଜାଙ୍କ ପୋଷ୍ୟପୁତ୍ର ବିଜୟ ।

ଭୂପତି ଓ ବିଜୟକୁ ଖୋଜା ହେଲା । କିନ୍ତୁ ସେ ଦୁହେଁ ମିଳିଲେ ନାହିଁ । ସେତେବେଳକୁ ସୁଡ଼ଙ୍ଗ ପଥରେ ଦୁହେଁ ପଳାଇଥିଲେ ।

ସୁଡ଼ଙ୍ଗପଥ ଯାଇ ବଣ ଭିତରେ ଗୋଟିଏ ମନ୍ଦିର ଭିତରେ ଶେଷ ହୋଇଥିଲା । ସେଠାରେ ବାହାରି ଦୁହେଁ ଗୋପାଳପୁର ପଳାଇଲେ । ରାଜା ମଣିସିଂହ ସହ ଭୂପତିଙ୍କର ପୂର୍ବରୁ ଯୋଗସୂତ୍ର ଥିଲା । କିନ୍ତୁ ସେଠାରେ ପହଞ୍ଚି ଭୂପତି ମଣିସିଂହଙ୍କୁ ପରାମର୍ଶ ଦେଲେ ଯେ ବିଜୟଙ୍କୁ କାରାରୁଦ୍ଧ କରାଯାଉ । କାରଣ ତାଙ୍କ ଦ୍ୱାରା ଆଉ କୌଣସି ଲାଭର ଆଶା ନ ଥିଲା ।

ଏହା ପରେ ଭୂପତି ଏବଂ ମଣିସିଂହ ଷଡ଼ଯନ୍ତ୍ର କରି ପଚିଶଜଣ ଦକ୍ଷ ସୈନିକ ସହ ଭୂପତି ସୁଡ଼ଙ୍ଗ ପଥରେ ଶୁଭେନ୍ଦ୍ରଙ୍କ ପ୍ରାସାଦ ଭିତରକୁ ପଶିଲେ । ପ୍ରକାଶ୍ୟ ଯୁଦ୍ଧ ନ କରି ହଠାତ୍ ଅନ୍ତଃପୁରରେ ପହଞ୍ଚି ରାଜାଙ୍କୁ ବଧ କରି ବିଭ୍ରାଟ ସୃଷ୍ଟି କରିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ ।

କିନ୍ତୁ ଥରେ ସୁଡ଼ଙ୍ଗରେ ପ୍ରବେଶ କରିବା ପରେ ଆଉ ସେମାନେ ବାହାରିପାରିଲେ ନାହିଁ । ସୁଡ଼ଙ୍ଗର ଦୁଇ ମୁହଁ ବନ୍ଦ କରିଦେଲେ ରାଜା ଶୁଭେନ୍ଦ୍ର ।

ସୁଡ଼ଙ୍ଗ ଭିତରେ ଅନ୍ନଜଳ ବିନା ଭୂପତି ଓ ତା' ଅନୁଚରମାନଙ୍କ ଅବସ୍ଥା ଶୋଚନୀୟ ହେବା ପରେ ସୁଡ଼ଙ୍ଗପଥ ଖୋଲାଗଲା । ସେ-

ମାନେ ରାଜାଙ୍କ ପାଖରେ ଆତ୍ମସମର୍ପଣ କଲେ ।

ସେହି ସମସ୍ତ ଭିତରେ ରାଜା ଶୁଭେନ୍ଦ୍ର ଗୋପାଳପୁର ଆକ୍ରମଣ କରି ମଣିସିଂହଙ୍କୁ ବନ୍ଦୀ କଲେ । ମଣିସିଂହ ଓ ଭୂପତି ଉଭୟଙ୍କୁ ପ୍ରାଣଦଣ୍ଡାଦେଶ ହେଲା ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ରାଜା ଶୁଭେନ୍ଦ୍ର ଯେ ବିଜୟଙ୍କୁ କେବଳ ମାତ୍ର ଗୋପାଳପୁରର ରାଜା କଲେ, ତାହା ନୁହେଁ, ନିଜ ଜାମାତାଙ୍କୁ ଅର୍ଦ୍ଧେକ ରାଜ୍ୟ ଦେଇସାରି ସୋମପୁରର ବାକି ଅର୍ଦ୍ଧେକ ମଧ୍ୟ ସେ ବିଜୟଙ୍କୁ ଦେଇଦେଲେ ।

ବେତାଳ ଟିକିଏ ରହି ତା'ପରେ ପ୍ରଶ୍ନ କଲା : "ରାଜା ଶୁଭେନ୍ଦ୍ରଙ୍କର ଏହା କିପରି ବିଚାର ? ଜଣେ ବିଦ୍ରୋହୀ ଭୂପତିଙ୍କୁ ପ୍ରାଣଦଣ୍ଡ ଦେବା ସ୍ଥଳେ ଅନ୍ୟଜଣଙ୍କୁ କିପରି ଦୁଇଥର ପୁରସ୍କୃତ କଲେ ? ଏହା ବାତ୍ସଲ୍ୟଭାବର ପରିଚୟ ନା ବୋକାମି ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ରାଜା ବିକ୍ରମ ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି କହିଲେ, "ରାଜା ଶୁଭେନ୍ଦ୍ର ବିଜୟ ପ୍ରତି ଯାହା କରିଛନ୍ତି, ତାହା ଜଣେ ବିବେକବାନ୍‌ର କାମ । ଏଥିରେ ସନ୍ଦେହ ନାହିଁ ଯେ ବିଜୟ ଯୋଗୁହିଁ ତାଙ୍କ ପ୍ରାଣରକ୍ଷା ହେଲା । ଷଡ଼ଯନ୍ତ୍ର କଥା ବିଜୟ ଓ ଭୂପତି ଭିତରେ ଆବଦ୍ଧ ଥିଲା । ଅତଏବ ବିଜୟ ଛଡ଼ା ଆଉ କିଏ କପୋତ ଦ୍ୱାରା ବାର୍ତ୍ତା ପଠାଇପାରିଥାନ୍ତା ? ବିଜୟ ରାଜାଙ୍କୁ ମାରିବାକୁ ଚାହିଁଥିଲେ ଭୂପତିର ସାହାଯ୍ୟ ବିନାହିଁ ତାହା କରିପାରିଥାନ୍ତେ । ପୁଣି ବିଜୟ ଭୂପତିଙ୍କୁ ସୁଡ଼ଙ୍ଗମାର୍ଗର ସନ୍ଧାନ ଦେବା ପଛରେ ତାଙ୍କୁ କାବୁ କରିବାର ଉଦ୍ଦେଶ୍ୟହିଁ ଥିଲା । ରାଜା ସୋମପୁର ରାଜ୍ୟର ଅଧେ ବିଜୟଙ୍କୁ ଦେବାର କାରଣ, ବିଜୟଙ୍କୁ ସେ ପୁଅ ପରି ଦେଖୁଥିଲେ । ନିଜ ଝିଅ ଏବଂ ବିଜୟ ଉଭୟଙ୍କୁ ସେ ଉତ୍ତରାଧିକାରୀ କଲେ । ଗୋପାଳପୁର ସିଂହାସନରେ ତାଙ୍କୁ ବସାଇବାର କାରଣ ତା' ଯୋଗୁ ନିଜ ପ୍ରାଣ ଓ ରାଜ୍ୟ ରକ୍ଷା ହେଲା ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହିତ ବେତାଳ ଖସିଯାଇ ପୁଣି ବୃକ୍ଷଡାଳରେ ଝୁଲିପଡ଼ିଲା ।

(କଳ୍ପିତ)



# ବିଧିର ଦାନ !

ରାମଦାସ ଜଣେ ସାଧୁପ୍ରକୃତିର ଲୋକ । ସେ ସମସ୍ତଙ୍କୁ ସାହାଯ୍ୟ କରେ । କେବେ ମିଛ କହେ ନାହିଁ କି ଛଳନା କରେ ନାହିଁ ।

ଦିନେ ହଠାତ୍ ରାମଦାସ ଘରେ ଚୋର ପଶି ତା'ର ସାମାନ୍ୟ ଧନ-ସମ୍ପଦ ନେଇଗଲା । ସକାଳେ ରାମଦାସ ଆଖିରେ ଅଶ୍ରୁ ଦେଖି ଗାଁଲୋକେ ଚାନ୍ଦା କରି ତା'ର କ୍ଷତିପୂରଣ କରିଦେଲେ ।

ଜଗୁରାଓ ଗାଁର ଜଣେ ଧନୀ କୃପଣ । ରାମଦାସର କ୍ଷତି ଲୋକେ ପୂରଣ କରିଦେବାର ଦେଖି ତା'ର ଭୀଷଣ ଈର୍ଷା ହେଲା । ଦିନେ ରାତିରେ ସେ ନିଜର ସବୁ ଧନ-ସମ୍ପଦ ନେଇ ଗାଁ ବାହାରେ ପୋଖରୀ ପାଖରେ ପୋତିଦେଲା ଓ ସକାଳେ ରଡ଼ିବୋବାଳି ପକାଇ ଲୋକଙ୍କୁ ଘର ଭିତରକୁ ଡାକିଆଣି ତା'ର ସବୁ ଚୋରି ହୋଇଯାଇଛି ବୋଲି ଦେଖାଇଦେଲା । ଲୋକେ ଆହା ଚୁ ଚୁ କଲେ । କିନ୍ତୁ ତାହାଠୁ ବେଶୀ କିଛି ନୁହେଁ । ସାହାଯ୍ୟ ଦେବା ପ୍ରଶ୍ନ କେହି ଜଣେ ହେଲେ ଉଠାଇଲେ ନାହିଁ ।

ଅମାବାସ୍ୟା ରାତିକୁ ପୋଖରୀ ପାଖରୁ ଜିନିଷପତ୍ରକ ଉଦ୍ଧାର କରିବାକୁ ନିଷ୍ପତ୍ତି କରି ଜଗୁରାଓ ଅଗତ୍ୟା ଅପେକ୍ଷା କଲା । କିନ୍ତୁ ଦୁଇଦିନ ପରେ ମନ୍ଦିର ତୋଳିବା ପାଇଁ ପୋଖରୀ ପାଖରେ ଜମି ସମତଳ କରିବା କାମ ଆରମ୍ଭ କଲେ ସେ ଅଞ୍ଚଳର ଜମିଦାର । ଜଗୁରାଓର ସମ୍ପଦ ବାହାରିଲା । "ଏହା ବିଧିର ଦାନ । ମନ୍ଦିର କାମରେ ଖର୍ଚ୍ଚ ହେବ ।" ଜମିଦାର କହିଲେ ।





# ଅର୍ଥର ଅଶ୍ରୁ

ଗଙ୍ଗାରାମ ନାମରେ ଜଣେ ବ୍ୟବସାୟୀ ଥାଏ ।

ତା'ର ଚାରି ପୁଅ । ଲୋକେ କୁହନ୍ତି ସତରେ ଗଙ୍ଗାରାମ ଭାଗ୍ୟବାନ୍ । ସେ ମଧ୍ୟ ସେୟା ଭାବି ଖୁବ୍ ଖୁସୀ ଥାଏ ।

ପୁଅମାନେ କ୍ରମେ ବଡ଼ ହେଲେ । ଥରେ ଜଣେ ଧନଲୋକ ଆସି ପହଞ୍ଚି ଗଙ୍ଗାରାମକୁ କହିଲେ, "ମୁଁ ଆପଣଙ୍କ ବଡ଼ପୁଅଟିକୁ ଘର-ଜୋଇଁଆ କରି ନେବାକୁ ଚାହେଁ । ରାଜି ତ ?"

ଧନ ପାଇଁ ସବୁ କିଛି ତ୍ୟାଗ କରିପାରନ୍ତି ଗଙ୍ଗାରାମ । ଧନ ଲୋଭରେ ପଡ଼ି ସେ ପଚାଶ ହଜାର ଟଙ୍କା ସମୁଧିଙ୍କଠୁ ରଖି ବଡ଼ପୁଅକୁ ବିବାହ ଦେଇ ତାଙ୍କ ଘରକୁ ପଠାଇଦେଲେ ।

ଠିକ୍ ସେହିଭଳି ଭାବରେ କୋଡ଼ିଏ ହଜାର ଟଙ୍କା ଆଉ ଜଣେ ଧନବ୍ୟକ୍ତିଙ୍କଠାରୁ ଦାବି ରଖି ଦ୍ୱିତୀୟ ପୁଅଟିକୁ ମଧ୍ୟ ତା'ର ଇଚ୍ଛା ବିରୁଦ୍ଧରେ ବିବାହ ଦେଇ ଶ୍ୱଶୁର ଘରକୁ ପଠାଇଦେଲେ ।

ତୃତୀୟ ପୁଅର ବିବାହ ମଧ୍ୟ ଜଣେ ଧନୀର ଝିଅ ସହିତ ହେଲା । ସେଠାରୁ ଗଙ୍ଗାରାମ କୋଡ଼ିଏ ହଜାର ଟଙ୍କା ପାଇଲେ । କିନ୍ତୁ ତୃତୀୟ ବୋହୂଟି ବୁଢ଼ାର ଏ ଲୋଭ ଦେଖି ତା' ସ୍ୱାମୀକୁ ନେଇ ଅଲଗା ଘର କରି ରହିଲା ।

ଏହିପରି ଜଣେ ପରେ ଜଣେ ପୁଅ ତା'ଠାରୁ ଦୂରେଇଗଲେ, ହେଲେ ଗଙ୍ଗାରାମର ଚିନ୍ତା ନାହିଁ । ସବୁ ଟଙ୍କା ଏକାଠି କରି ଧନୀ ହୋଇ ବସିଛି । ଏବେ ପାଳି ପଡ଼ିଲା ଚତୁର୍ଥ ପୁଅର ।

ପ୍ରଥମରୁହିଁ ପୁଅ ମନା କରି ଦେଲା ଯୌତୁକ ବା ଦାବି ଟଙ୍କା ନେଇ ସେ କଦାପି ବିବାହ କରିବ ନାହିଁ । ଗଙ୍ଗାରାମ ପୁଅକୁ ଖୁବ୍ ବୁଝାଇଲା । ହେଲେ ପୁଅ ନିଜ କଥାରେ

ବିମଳା

ଅଟଳ । ତା'ପରେ ସେ ଅନ୍ୟ ଭାବରେ ପୁଅକୁ ବୁଝାଇଲା, "ଆରେ ପୁଅ, ଆମେ ଯୌତୁକ ନେବା ନାହିଁ ସିନା, ଉପହାର ତ ନେବା !"

"ଯୌତୁକ ବା ଉପହାର ମୁଁ କନ୍ୟା-ପିତାଙ୍କଠାରୁ କିଛି ନେବି ନାହିଁ ।" ଏକଥା କହି ଚତୁର୍ଥପୁଅଟି ନିଜ ପସନ୍ଦ ଅନୁସାରେ ଝିଅଟିଏ ଠିକ୍ କରି ତା' ସହିତ ଫୁଲହାର ବଦଳ କରି ବିବାହ କଲା । ଗଙ୍ଗାରାମ ପୁଅବୋହୂଙ୍କୁ ଘରୁ ବାହାର କରିଦେଲା ।

କେତେବର୍ଷ ପରେ ଗଙ୍ଗାରାମ ବୁଢ଼ା ହୋଇଗଲା । ସ୍ତ୍ରୀ ତ ଆଗରୁ ମରିଯାଇଥିଲା । ପୁଅମାନେ ସବୁ ଦୂରରେ । ଏକୁଟିଆ ରହି ଚିନ୍ତା କରି କରି ବେମାର ହେଲା ଓ ସେ ଶଯ୍ୟାଶାୟୀ ହୋଇପଡ଼ିଲା । ଦରମା ଦେଇ ଚାକର ରଖିଲେ କାଳେ ଚାକର ତା ତଣ୍ଟି ଚିପି ମାରିଦେବ ଓ ସବୁ ଟଙ୍କା ନେଇ ପଳାଇବ, ସେଥିପାଇଁ ସ୍ଥାୟୀ ଚାକର ରଖିପାରେ ନାହିଁ ।

ବାପାଙ୍କର ଅସୁସ୍ଥତା ବିଷୟରେ ଖବର ପାଇ ଚତୁର୍ଥପୁଅ ସ୍ତ୍ରୀକୁ ଧରି ଆସି ପହଞ୍ଚିଲା । ବୁଢ଼ା ପଶ୍ଚାତ୍ତାପ କରି ଖୁବ୍ କାନ୍ଦିଲା । ବୋହୂଟି ବୁଢ଼ାର ଅନେକ ସେବାଯତ୍ନ କଲା । ବୁଢ଼ାକୁ ଲାଗିଲା ସେ ତା'ର ଜୀବନ ଫେରିପାଇଛି ।

ଦିନେ ବୁଢ଼ା ସାନପୁଅକୁ ଅନ୍ୟପୁଅମାନଙ୍କ ବିଷୟରେ ପଚାରିଲା । ସାନପୁଅ କହିଲା, "ବଡ଼ଭାଇଙ୍କୁ ତ ଟଙ୍କା ନେଇ ବିକିଛ । ମଝିଆଁ ଭାଇ ତ ତାଙ୍କ ଇଚ୍ଛା ବିରୁଦ୍ଧରେ ବିବାହ ହୋଇ ନରକ ଯନ୍ତ୍ରଣା ଭୋଗୁଛନ୍ତି । ତୃତୀୟଭାଇ ତୁମ ଦୁର୍ବୁଦ୍ଧି ଦେଖି ଦୂରେଇ ରହିଛନ୍ତି । ଆସିବ କିଏ ?" ଏକଥା ଶୁଣି ବୁଢ଼ା ବହୁତ କାନ୍ଦିଲା । ହେଲେ ବିକିଦେଲା ପରେ ଦୂରେଇ ଯାଇଥିବା ପୁଅମାନଙ୍କୁ ପୁଣି ଥରେ ତ କିଣିଆଣି ହେବ ନାହିଁ । କେବଳ ଚତୁର୍ଥଟି ବିକା ହୋଇ ନ ଥିଲା ବୋଲି ଶେଷକାଳରେ ବୁଢ଼ାର ଏକମାତ୍ର ଆଶା ଓ ଆଶ୍ୱାସନାର ସ୍ଥଳୀ ହୋଇ ରହିଲା ।





# କାମର ମହତ୍ତ୍ୱ

ପ୍ରଣବାନନ୍ଦ ଥିଲେ ଜଣେ ସ୍ୱଚ୍ଛଳ ଗ୍ରାମୀଣ । ସେ ନିଜ ଜମି ଦେଖାଶୁଣା କରି ସୁଖରେ ଦିନାତିପାତ କରୁଥିଲେ ।

ଦିନେ ତାଙ୍କ ଘରେ ତାଙ୍କର ତିନିଜଣ ବନ୍ଧୁ ଆସି ଆତିଥ୍ୟ ଗ୍ରହଣ କଲେ । ଜଣେ ଥିଲେ ବ୍ୟବସାୟୀ, ଜଣେ ଗାୟକ, ଏବଂ ତୃତୀୟ ଜଣକ ରାଜକର୍ମଚାରୀ । ପ୍ରଣବାନନ୍ଦ ସେମାନଙ୍କର ଯଥାବିଧି ଚର୍ଚ୍ଚା କଲେ ଓ ସେମାନଙ୍କ ପେଶା ସମ୍ପର୍କରେ ମଧ୍ୟ ନିଜର ଯଥେଷ୍ଟ ଜ୍ଞାନ ଥିବାର ପରିଚୟ ଦେଲେ ।

ଜଣେ ବନ୍ଧୁ ପଚାରିଲେ, "ତୁମର ତ ଏତେ ବିଷୟରେ ଏତେ ଜ୍ଞାନ ଅଛି । କହିଲ ଆମ ଭିତରୁ କାହାର ପେଶାର ମହତ୍ତ୍ୱ ଅଧିକ !"

"ଆରେ ଭାଇ, କୌଣସି କାମ ବଡ଼, ଏ କଥା କହିହେବ ନାହିଁ । ପ୍ରତ୍ୟେକ କାମର ମହତ୍ତ୍ୱ ଅଛି । ଯାହାର ଯାହା ପେଶା, ସେ ଯଦି ସେଥିରୁ ସନ୍ତୋଷ ପାଉଥିବ, ତେବେ ତାହା ପାଇଁ ସେ ଗୋଟିକ ମହତ୍ତ୍ୱପୂର୍ଣ୍ଣ ।" ପ୍ରଣବାନନ୍ଦ କହିଲେ ।

ତିନିଜଣଯାକ କହିଲେ, "ଏମିତି କହିଲେ ହେବ ? ତୁମେ କ'ଣ ଭାବୁଛ ବ୍ୟବସାୟର ଜଟିଳତା, ଗାୟକର ପ୍ରତିଭା, ରାଜକର୍ମଚାରୀର ଦାୟିତ୍ୱ — ଏସବୁ କଳା ଗୃଷକାମଠାରୁ ମହତ୍ତ୍ୱ ନୁହେଁ ?"

"ତୁମେ ଯଦି ସେମିତି କହିବ, ତେବେ ମୁଁ ଦେଖାଇଦେବି ଯେ ମୁଁ ତୁମ ସମସ୍ତଙ୍କୁ ବଳିଯିବି ।" ପ୍ରଣବାନନ୍ଦ ଉତ୍ତର ଦେଲେ ।

ତିନିବନ୍ଧୁ ଉତ୍ତେଜିତ ହୋଇ କହିଲେ କି ପ୍ରଣବାନନ୍ଦ ଯଦି ନିଜ କଥା ସତ୍ୟ ବୋଲି ପ୍ରମାଣ କରିଦେବେ, ତେବେ ପ୍ରତ୍ୟେକେ ତାଙ୍କୁ ଶହେ



କରି ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେବେ ।

ପ୍ରଣବାନନ୍ଦ ସେ ସର୍ତ୍ତ ଗ୍ରହଣ କରି ସେମାନଙ୍କ ସହ ରାଜଧାନୀକୁ ଯାଇ ପ୍ରଥମେ ବ୍ୟବସାୟୀଙ୍କ ଘରେ ଅତିଥି ହେଲେ । ବ୍ୟବସାୟୀଙ୍କର କେତୋଟି ଦୋକାନ ଥିଲା । ସେଥିରେ ପନିପରିବା ଦୋକାନ ବି ଥିଲା । କିଛି ଭଲ ଭଲ ପରିବା ବାଛିନେଇ ପ୍ରଣବାନନ୍ଦ ଯାଇ ରାଜଧାନୀର ଧନୀ ଓ ସମ୍ଭ୍ରାନ୍ତ ମହଲରେ ଯେଉଁ ବଜାର, ସେଥିରେ ବିକ୍ରି କରିବାକୁ ବସିଲେ । ଅନ୍ୟ ଦୋକାନୀମାନେ ଯେଉଁ ଦାମ୍‌ରେ ପରିବା ବିକୁଥିଲେ, ସେ ତାହାଠୁ ଅଧିକ ଦାମ୍ ଉଲ୍ଲେଖ କଲେ । "ତୁମେ ଅନ୍ୟମାନଙ୍କଠାରୁ ବେଶୀ ଦାମ୍ ନେବ କାହିଁକି ?" ଲୋକେ ଏହା ପଚାରନ୍ତେ ସେ ଉତ୍ତର ଦେଲେ, "ବାବୁ, ଯେମିତି ମାଲ, ସେମିତି ଦାମ୍ । ମୋ ମାଲ କେମିତି ଥରେ ଜାଣିଲେ ଏ ପ୍ରଶ୍ନ ପଚାରନ୍ତ ନାହିଁ । ଭୁଛାଟାରେ ସବୁଠାରୁ ବଡ଼ଲୋକମାନେ ମୋଠାରୁ କିଣୁଛନ୍ତି !"

ସମ୍ଭ୍ରାନ୍ତ ଲୋକେ ତାଙ୍କଠାରୁ ବେଶୀ ପଇସା ଦେଇ କିଣିଲେ ।

ପରଦିନ ସେ ସହରର କୁଲିମଜୁରିଆ ବସ୍ତି-ପାଖ ବଜାରକୁ ବଳୁ ପନିପରିବା ଧରି ଯାଇ ସେଠାରେ କନନ୍ତର ଯାହା ଦାମ୍, ସେଥିରୁ ଅଳ୍ପ ଅଳ୍ପ କମ୍ ଦାମ୍‌ରେ ବିକିବାକୁ ଲାଗିଲେ । ଅଳ୍ପ ସମୟ ଭିତରେ ସବୁ ଶେଷ କରି ସେ ଫେରିଲେ ।

ବ୍ୟବସାୟୀ-ବନ୍ଧୁ ସ୍ୱୀକାର କଲେ ଯେ ଖରିଦ୍‌ଦାରମାନଙ୍କୁ ପ୍ରଣବାନନ୍ଦ ଭଲ ଭାବରେ ବୁଝନ୍ତି ଓ ସେ ବ୍ୟବସାୟ କରିଥିଲେ ସଫଳ ହୋଇଥାନ୍ତେ ।

ପ୍ରଣବାନନ୍ଦ ତାଙ୍କଠାରୁ ବିଦା ନେଇ କିଛିଦିନ ପରେ ଗାୟକ ବନ୍ଧୁ-ଘରେ ପହଞ୍ଚିଲେ । ସାଥିରେ ନେଇଥାନ୍ତି ଗୋଟିଏ ହରିଣ । ପାଖ ପଡ଼ୋଶୀଙ୍କୁ ଡକା ହେଲା । ପ୍ରଣବାନନ୍ଦ କହିଲେ, "ଆମ ଦୁହିଁଙ୍କ ଭିତରେ ସଂଗୀତରେ ପ୍ରତିଯୋଗିତା ହେବ । ଜିଏ ଗୁଣୀ ଗାୟକ, ଆପଣମାନେ ସ୍ଥି

ଦେବେ ।" ଲୋକେ ସମ୍ମତ ହେଲେ ।

ପ୍ରଥମେ ଗାୟକବନ୍ଧୁ ଖୁବ୍ ମନଦେଇ ଗୋଟିଏ ବିଶେଷ ଶାସ୍ତ୍ରୀୟ ସଙ୍ଗୀତ ଗାନ କଲେ । କ୍ରମେ ବହୁତ ଲୋକ ଜମା ହୋଇଗଲେ । ତାଙ୍କ ଗୀତ ପରେ ପ୍ରଣବାନନ୍ଦ ଗାଇଲେ । ସେ ଅତି ସହଜ କିନ୍ତୁ ମଧୁର ଗୀତଟିଏ ବୋଲିଲେ । ଜଣେ ବିରହୀ ଯୁବକ କୌଣସି କନ୍ୟାକୁ ବାରମ୍ବାର ରାଣୀ ବୋଲି ସମ୍ବୋଧନ କରି ତା' ମନକଥା କହୁଛି—ଏହାହିଁ ବିଷୟବସ୍ତୁ ।

ସମସ୍ତେ ଅନାଇଥା'ନ୍ତି—ହରିଣଟି କ୍ରମେ ପ୍ରଣବାନନ୍ଦଙ୍କ ପାଖକୁ ଧୁଙ୍କି ଧୁଙ୍କି ଆସିଲା— ଯେମିତିକି ସେ ଗୀତରେ ମୁଗ୍‌ଧ ହୋଇଛି ।



ଲୋକେ ବାହାବା ଦେଲେ । ଯିଏ ହରିଣକୁ ଗୀତ ଦ୍ୱାରା ଆକର୍ଷଣ କରିପାରେ, ସେ କେଡ଼େ ପ୍ରତିଭାବାନ୍ ହୋଇ ନ ଥିବ ! ଏହାହିଁ ହେଲା ଲୋକଙ୍କ ମନ୍ତବ୍ୟ ।

ଆସର ପରେ ଗାୟକ-ବନ୍ଧୁ ପ୍ରଣବାନନ୍ଦଙ୍କୁ ପଚାରିଲେ, "ହରିଣ କେମିତି ଆକୃଷ୍ଟ ହେଲା ?"

"ସେଥିରେ କୌଣସି ବିଶେଷତ୍ୱ ନାହିଁ । ହରିଣକୁ ମୁଁ ରାଣୀ ବୋଲି ଡାକିଲେ ସେ ଯେମିତି ପାଖକୁ ଆସିବ, ଏହା ମୁଁ ତାକୁ ଶିଖାଇଥିଲି ।" କହିଲେ ପ୍ରଣବାନନ୍ଦ । ଯାହା- ହେଉ ଗାୟକ ହାର ମାନିଲେ ।

ଏହାପରେ ଗାୟକ ଯାଇ ରାଜକର୍ମଚାରୀଙ୍କ ଘରେ ପହଞ୍ଚିଲେ ଓ କହିଲେ, "ତୁମ ଦରମା ଯେପରି ରାଜା ବଢ଼ାଇଦେବେ, ମୁଁ ସେ ବ୍ୟବସ୍ଥା କରିଦେବି ।"

"ତୁମର ବାହାଦୁରି କମ୍ ନୁହେଁ ! ମୁଁ ରାଜାଙ୍କ ପାଖରେ ଏତେ ବର୍ଷ କାମ କରୁଛି । ରାଜା ମୋତେ ଜାଣନ୍ତି ନାହିଁ ଯେ ତୁମ କଥାରେ ମୋର ଦରମା ବଢ଼ାଇବେ ।" କର୍ମଚାରୀ ତାଚ୍ଛଲ୍ୟ ଭରେ ଉତ୍ତର ଦେଲେ ।

ପରଦିନ ପ୍ରଣବାନନ୍ଦ ମନ୍ତ୍ରୀଙ୍କୁ ସାକ୍ଷାତ କରି ଗୋଟିଏ ସୁନ୍ଦର ଉପହାର ଦେଲେ । ମନ୍ତ୍ରୀ ଖୁସି ହୋଇ ପଚାରିଲେ, "ମୁଁ ଆପଣଙ୍କର କ'ଣ କରିପାରିବି ?"

"ଖାଲି ଥରେ ରାଜାଙ୍କ ସହ କିଛି ସମୟ ସକାଶେ ସାକ୍ଷାତ୍ କରାଇଦିଅନ୍ତୁ ।"

ମନ୍ତ୍ରୀ ତାହେ ବ୍ୟବସ୍ଥା କରିଦେଲେ । ପ୍ରଣବାନନ୍ଦ ଜଣେ କବିଙ୍କୁ କିଛି ଅର୍ଥ ଦେଇ ରାଜାଙ୍କ ପ୍ରଶସ୍ତି ସୂଚକ କବିତାଟିଏ ଲେଖାଇ ତାକୁ ମୁଖସ୍ତ କରି ସାଇଥା'ନ୍ତି ।

ରାଜାଙ୍କ ଆଗରେ କବିତାଟି ସେ ବୋଲନ୍ତେ ରାଜା ପଚାରିଲେ, "ଏହାର ଲେଖକ କିଏ ?"

"ମହାରାଜ ! ମୁଁ ସେକଥା ଜାଣେନା । କିନ୍ତୁ ମୋର ଜଣେ ବନ୍ଧୁ, ସିଏ କି ଆପଣଙ୍କର ଜଣେ କର୍ମଚାରୀ, ସେ ପ୍ରତ୍ୟହ ସକାଳେ ପ୍ରଥମେ ଏଇ କବିତାଟି ବୋଲିସାରି ତା'ପରେ ଯାଇ ଅନ୍ୟ କାମଦାମ କରନ୍ତି । ଏହା ଶୁଣି ଶୁଣି ଥରେ ଆପଣଙ୍କୁ ସାକ୍ଷାତ୍ ଦେଖିବା ନିମନ୍ତେ ମୋର ବାସନା ହେଲା ।" ପ୍ରଣବାନନ୍ଦ ଉତ୍ତର ଦେଲେ ।

ପ୍ରଣବାନନ୍ଦ ତାଙ୍କର ବନ୍ଧୁଙ୍କ ନାମ କହିଥିଲେ । ରାଜା ପ୍ରୀତ ହୋଇ ସେ କର୍ମଚାରୀଙ୍କ ଦରମା ବଢ଼ାଇଦେଲେ ।

କର୍ମଚାରୀ ସ୍ୱୀକାର କଲେ ଯେ ପ୍ରଣବାନନ୍ଦଙ୍କର ଜୟ ହେଲା । ସେମାନେ ତିନିହେଁ ତାଙ୍କୁ କହିଲେ, "ତୁମେ ଏଡ଼େ ଚତୁର ଲୋକ । ଗାଁରେ ବସିଛ କାହିଁକି ? ସହରକୁ ଆସ । ବେପାର କରିବ, ନ ହେଲେ ଦରବାରରେ କାମ କରିବ ।"

"ନା ଭାଇ, ମୁଁ ଯେଉଁସବୁ ଚତୁରତା ଦେଖାଇଲି, ତାହା ସାମୟିକ । ପ୍ରକୃତରେ ତୁମ ନିଜ ନିଜ କାମରେ ତୁମେମାନେ ମୋଠୁଁ ବହୁତ ଦକ୍ଷ । ମୋ କାମରେ ମୁଁ ଦକ୍ଷ । ମୁଁ କିଛି ଉପରେ ଯାହା କରିଦେଲି, ତାହା କ'ଣ ଦୈନନ୍ଦିନ ପେଶା ହିସାବରେ କରି ମୁଁ ସଫଳ ହୋଇ ପାରିବି ? ଯାହାର ଯାହା କାମ—ଯେଉଁଥିରୁ ସନ୍ତୋଷ ମିଳିବ—ତାହା ପାଇଁ ସେ କାମ ଭଲ ।" ପ୍ରଣବାନନ୍ଦ ବୁଝାଇଦେଲେ ।





# ଇନ୍ଦ୍ର

[ ୨ ]

ପ୍ରାଚୀନ ସଭ୍ୟତା ଓ ଧର୍ମରେ ଇନ୍ଦ୍ରଙ୍କର ଏକ ବିଶେଷ ସ୍ଥାନ ଥିଲା । ସେ ଥରେ ବୃତ୍ର ରାକ୍ଷସକୁ ସଂହାର କରିଥିଲେ । ତତ୍କାଳୀନ ମୁନି-ଋଷିଗଣ ଯେ ଇନ୍ଦ୍ରଙ୍କର ସେ କାର୍ଯ୍ୟ ଉପରେ ଅତ୍ୟନ୍ତ ଗୁରୁତ୍ୱ ଦେଇଥିଲେ, ଏଥିରେ ସନ୍ଦେହ ନାହିଁ । କାରଣ ଋଗ୍‌ବେଦରେ ଇନ୍ଦ୍ରଙ୍କୁ ବାରଂବାର ବୃତ୍ରହନ୍ (ବୃତ୍ରହନ୍ତା) ବୋଲି କୁହାଯାଇଛି ।

ବୃତ୍ର ରାକ୍ଷସକୁ ନିଧନ କରିବାରେ ଇନ୍ଦ୍ର ଯେତେବେଳେ ଅଗ୍ରସର ହେଲେ, ସେତେବେଳେ ତାଙ୍କୁ ଅଗ୍ନି ଓ ମରୁତ୍ ସାହାଯ୍ୟ କରିଥିଲେ । ବୃତ୍ରକୁ ବଧ କରିବା ସଙ୍ଗେସଙ୍ଗେ ଇନ୍ଦ୍ର ଉରଣ, ବିଶ୍ୱରୂପ, ଅର୍ବୁଦ ଇତ୍ୟାଦି ଆହୁରି କେତେକ ରାକ୍ଷସଙ୍କୁ ମଧ୍ୟ ବଧ କରିଥିଲେ ।

କୌଣସି କୌଣସି ପୁରାଣରେ ଲେଖା ଅଛି କି ପ୍ରାଚୀନ କାଳରେ ପର୍ବତମାନେ ଉଡ଼ିପାରୁଥିଲେ । ଇନ୍ଦ୍ର ସେମାନଙ୍କ ଡେଣା କାଟିପକାଇ ସେମାନଙ୍କୁ ସ୍ଥାବର କରିଦେଲେ । ପୃଥିବୀ ଏବଂ ଆକାଶକୁ ସେ ନିଜ ଶକ୍ତି ବଳରେ ପରସ୍ପରଠାରୁ ଅଲଗା କରିଦେଇଥିଲେ ।

ମନେହୁଏ, ଇନ୍ଦ୍ର ବହୁକାଳ ପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ଦେବତାଙ୍କୁ ବୁଝାଉ ନ ଥିଲା । ଦୈବଶକ୍ତିକୁ ବୁଝାଉଥିଲା । ତେଣୁ ବହୁବିଧ କାର୍ଯ୍ୟକଳାପରେ ଇନ୍ଦ୍ର ଅଂଶ ଗ୍ରହଣ କରୁଥିବାର ଦେଖାଯାଏ । ଯେଉଁ ଯେଉଁ କାର୍ଯ୍ୟରେ ଦୈବଶକ୍ତିର ଆବାହନ କରିବା ଦରକାର ହୋଇଛି, ସେହି ସେହି ସ୍ଥାନରେ ଇନ୍ଦ୍ରଙ୍କୁ ଆରାଧନା କରାଯାଇଛି ।



ଯେତେବେଳେ ଆର୍ଯ୍ୟମାନଙ୍କୁ ଦସ୍ୟୁମାନେ ଆକ୍ରମଣ କରୁଥିଲେ, ସେତେବେଳେ ଆର୍ଯ୍ୟମାନେ ଇନ୍ଦ୍ରଙ୍କୁ ସ୍ମରଣ କରୁଥିଲେ । ଇନ୍ଦ୍ର ଅଚିରେ ଦସ୍ୟୁ ଦମନ କରିପାରୁଥିଲେ ।

କୁଶିକ ବଂଶ ପ୍ରତି ଇନ୍ଦ୍ରଙ୍କର ବିଶେଷ ଦୟା ଥିବାର ପ୍ରମାଣ ମିଳେ । ସେ ସେ ବଂଶର ଲୋକଙ୍କ ସହ ଏତେ ବେଶୀ ମିଶୁଥିଲେ ଓ ସେମାନଙ୍କ ସହାୟତା କରୁଥିଲେ ଯେ ଇନ୍ଦ୍ରଙ୍କୁ କୌଶିକ ବୋଲି କୁହାଯାଏ ।

ଇନ୍ଦ୍ରଙ୍କ କାର୍ଯ୍ୟକଳାପ ସମ୍ପର୍କରେ ଯେତେ କାହାଣୀ ପଢ଼ିବାକୁ ମିଳେ, ସେସବୁର ଭିନ୍ନ ଅର୍ଥ ରହିଛି । ଗଳ୍ପର ଉପରଠାଉରିଆ ଅଂଶ ଲୋକେ ଉପଭୋଗ କରନ୍ତୁ, କିନ୍ତୁ ଭିତର ଅର୍ଥ ପ୍ରତି ସଚରାଚର କେହି ମନ ଦିଅନ୍ତି ନାହିଁ ।

ଥରେ ସୂର୍ଯ୍ୟଙ୍କ ରଥ ସହିତ ଆଉ ଗୋଟିଏ ରଥ ବାଡ଼େଇ ହୋଇଯିବା ଫଳରେ ଦୁଇ ରଥ ଅଟକିଗଲେ । ଇନ୍ଦ୍ର ଦୁଇଜଣଙ୍କୁ ଅଲଗା କରିବାକୁ ଯାଇ ସୂର୍ଯ୍ୟଙ୍କ ରଥର ଗୋଟାଏ ଚକ ଖସାଇଦେଲେ । ସେହି ଦିନରୁ ସୂର୍ଯ୍ୟ ଏକଚକ୍ର ।

ଏହାର ତାତ୍ପର୍ଯ୍ୟ କ'ଣ ? ସୂର୍ଯ୍ୟଙ୍କ ବିନା ସୃଷ୍ଟି ଅଚଳ । ସୂର୍ଯ୍ୟ ନିଜ କାର୍ଯ୍ୟରେ ସାମାନ୍ୟ ମଧ୍ୟ ବ୍ୟତିକ୍ରମ କଲେ ଚଳିବ ନାହିଁ । ତାଙ୍କର ଦୁଇଟି ଚକ ଥିଲା ବୋଲି ଅନ୍ୟ ଜଣଙ୍କ ରଥ ସହ ସଂଘର୍ଷ ହେଲା । ସେ ଏକଚକ୍ର ହେବା ଫଳରେ ଏକନିଷ୍ଠ ଭାବରେ ନିଜ ଗତିପଥରେ ଯିବାଆସିବା କଲେ, କାହାରି ସହ ସଂଘର୍ଷର ପ୍ରଶ୍ନ ରହିଲା ନାହିଁ । ଇନ୍ଦ୍ର ଏଠାରେ ବିଧାତାର ଶକ୍ତି ସୂଚିତ କରୁଛନ୍ତି । ଅର୍ଥାତ୍ ସେ ସୂର୍ଯ୍ୟଙ୍କ ଯାତ୍ରା ନିୟନ୍ତ୍ରଣ କରି ଦେଲେ ।

ଥରେ ଦଳେ ଦୁଷ୍ଟଲୋକ ଯଜ୍ଞରେ ଉତ୍ସର୍ଗ ହେବା ନିମନ୍ତେ ଥିବା ଗାଈମାନଙ୍କୁ ନେଇ ପର୍ବତ ଗୁମ୍ଫା ଭିତରେ ଲୁଚାଇ ରଖିଲେ । ଇନ୍ଦ୍ରଙ୍କ ଦୂତ ଆସି ଗାଈମାନଙ୍କୁ ଫେରାଇଦେବା ସକାଶେ ଯେତେ ଅନୁରୋଧ କଲେ ମଧ୍ୟ ଦୁଷ୍ଟ ଲୋକେ ଶୁଣିଲେ ନାହିଁ । ଦୂତକୁ ଥଟ୍ଟା କଲେ ।

ସେଇଠୁ ଇନ୍ଦ୍ର ଆସି ସେମାନଙ୍କୁ ଦମନ କରି ଗାଈମାନଙ୍କୁ ଉଦ୍ଧାର କଲେ ।

ଇନ୍ଦ୍ରଙ୍କର ଏହି ଭୂମିକା ସବିସ୍ତାରେ ବର୍ଣ୍ଣିତ ହୋଇଛି । ସେ ସାହସ, ଧୈର୍ଯ୍ୟ ତଥା ଶକ୍ତିର ପରିଚୟ ଦେଇ ଗାଈମାନଙ୍କୁ ଉଦ୍ଧାର କଲେ । କିନ୍ତୁ ଗାଈମାନଙ୍କୁ ଏତେ ମୂଲ୍ୟବାନ୍ ସମ୍ପଦ ହିସାବରେ କାହିଁକି ଚିତ୍ରିତ କରାଯାଇଛି ? ସାଧାରଣତଃ ଲୋକେ ଧରିନିଅନ୍ତି ଯେ ପ୍ରାଚୀନ କାଳରେ ଯେହେତୁ କୃଷି ସକାଶେ ତଥା ଦୁଗ୍ଧ ସକାଶେ ଗୋ-ସମ୍ପଦର ଆବଶ୍ୟକତା ଥିଲା, ତେଣୁ ଗୋ ଏବଂ ଗାଈ ବିଷୟରେ ନାନା ବୃତ୍ତାନ୍ତ ରଚିତ ହୋଇଥିବାର ଦେଖିବାକୁ ମିଳେ । କିନ୍ତୁ ଏହା ଠିକ୍ ବ୍ୟାଖ୍ୟା ନୁହେଁ ।

ବେଦରେ ଗୋ ଏବଂ ଗାଈ ଶବ୍ଦମାନ ଆଲୋକର ପ୍ରତୀକ । ଆଲୋକକୁ ଲୁଚାଇ ନେବା ଅନ୍ଧଶକ୍ତି ବିରୁଦ୍ଧରେ ଇନ୍ଦ୍ର ଅଭିଯାନ କରିବାର ଅର୍ଥ ସ୍ପଷ୍ଟ । ଏଠାରେ ଦୁଷ୍ଟଲୋକ ମଣିଷଙ୍କୁ ବୁଝାଉ ନାହିଁ—କୁଶକ୍ତିକୁ ବୁଝାଉଛି ।

ବୈଦିକ ଯୁଗର ମୁନିଋଷିମାନେ ଜୀବନକୁ ଭଲ ପାଉଥିଲେ । ପୃଥିବୀକୁ ପରିତ୍ୟାଗ କରି ସନ୍ନ୍ୟାସୀ ହେବା ସକାଶେ କହୁ ନ ଥିଲେ । ଜୀବନରେ କିପରି ମଣିଷ ସୁସ୍ଥ ସବଳ ଓ ସତ୍ୟାନ୍ୱେଷୀ ହୋଇପାରିବ, ଏହାରି ଦିଗ୍‌ଦର୍ଶନ ସେମାନେ ଖୋଜୁଥିଲେ । ତେଣୁ ବେଦବର୍ଣ୍ଣିତ ଦେବଦେବୀ ଜୀବନଧର୍ମୀ । ଅର୍ଥାତ୍ ସେମାନଙ୍କ ଭିତରେ ସେ ଯୁଗର ମଣିଷ ତା'ର ଅଭୀପ୍ସା



ସିଦ୍ଧି ସକାଶେ ପ୍ରୟୋଜନୀୟ ଶକ୍ତି ଦେଖିପାରୁଥିଲେ ଏବଂ ସେ ଶକ୍ତି ଲାଭ କରିବା ନିମନ୍ତେ ସେମାନଙ୍କୁ ପ୍ରାର୍ଥନା କରୁଥିଲେ । ସତ୍ୟର ପଥରେ ଅନେକେ ବାଧାବିଘ୍ନ ଅତିକ୍ରମ କରିବା ଦିଗରେ-ସେମାନଙ୍କର ସହାୟକ ଶକ୍ତି ରୂପେ ଇନ୍ଦ୍ର ଆରାଧିତ ହେଉଥିଲେ ।

ଆଶ୍ଚର୍ଯ୍ୟର କଥା, ପାରସ୍ୟର ସୁପ୍ରାଚୀନ ଗ୍ରନ୍ଥ ଆଭେସ୍ତାରେ 'ଇନ୍ଦ୍ର'ଙ୍କ ଉଲ୍ଲେଖ ଦୃଷ୍ଟିଗୋଚର ହୁଏ । ତେବେ ସେଥିରେ ଇନ୍ଦ୍ରଙ୍କୁ ଯେପରି ଚିତ୍ରିତ କରାଯାଇଛି, ତାହା ଦେବୋପମ ନୁହେଁ । ମନେହୁଏ, ତତ୍କାଳୀନ ପାରସ୍ୟର ଜ୍ଞାନୀଗୁଣୀମାନେ ବୈଦିକ ଋଷିମାନଙ୍କ ସମ୍ପର୍କରେ ଆସିଥିଲେ, କିନ୍ତୁ ବେଦବର୍ଣ୍ଣିତ ଚରିତ୍ରମାନଙ୍କର ତାତ୍ପର୍ଯ୍ୟ ବୁଝିପାରି ନ ଥିଲେ । ତେଣୁ ସେମାନଙ୍କ ବର୍ଣ୍ଣନା ହୋଇଯାଇଛି ଦୁର୍ବଳ ।

କାଳକ୍ରମେ ଦୈବଶକ୍ତି ରୂପେ ନ ଦେଖି ଇନ୍ଦ୍ରଙ୍କୁ ଜଣେ ଦେବତା ରୂପେହିଁ ଦେଖା ହୋଇଛି । ଆଶ୍ଚର୍ଯ୍ୟର କଥା ଶେଷ ଆଡ଼କୁ ଲେଖା ହୋଇଥିବା ପୁରାଣମାନଙ୍କରେ ଇନ୍ଦ୍ରଙ୍କର ବିଶେଷ ଗୌରବ ଗାନ କରାହୋଇ ନାହିଁ । ବରଂ ରାକ୍ଷସମାନେ ତାଙ୍କୁ ବିବ୍ରତ ହଇରାଣ କରିବା ଯୋଗୁ ଇନ୍ଦ୍ର ମନୁଷ୍ୟ-ରାଜାମାନଙ୍କ ସହାୟତା ଲୋଡ଼ିଛନ୍ତି । ବ୍ରହ୍ମା ଓ ବିଷ୍ଣୁଙ୍କୁ ପ୍ରାର୍ଥନା ଦ୍ୱାରା ତୁଷ୍ଟ କରି ସେ ରାଜା ଦଶରଥଙ୍କ ସାହାଯ୍ୟ କିପରି ପାଇବେ, ସେ ବ୍ୟବସ୍ଥା କରିଛନ୍ତି । ଇନ୍ଦ୍ର ମଣିଷର ସଙ୍କଟରେ ସାହାଯ୍ୟ କରିବାକୁ ଆସୁଥିଲେ । କାଳକ୍ରମେ ମଣିଷମାନେ ତାଙ୍କୁ ସାହାଯ୍ୟ କରିବା ଆବଶ୍ୟକ ହୋଇଛି । ଏହା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ଦେବଦେବୀମାନଙ୍କ ଅସ୍ତିତ୍ୱ କ'ଣ ସତ୍ୟ ? ସ୍ଥୂଳ ଭାବରେ ଦୃଶ୍ୟମାନ ପ୍ରାଣୀସକଳ ଓ ବସ୍ତୁ-ସମସ୍ତ ଛଡ଼ା ଅନେକ ଅଦୃଶ୍ୟ ଶକ୍ତି ରହିଛନ୍ତି । ମଣିଷର ଚେତନା ଉପରେ ସେମାନଙ୍କର ପ୍ରଭାବ ରହିଛି । ପ୍ରାଚୀନ କାଳରୁ ଏ ବିଶ୍ୱାସ ଦୃଢ଼ ।





ଭାରତ-କାହାଣୀ

## ଉଦାସୀନ ରାଜପୁତ୍ର

ପୁରାକାଳରେ ସାକେତ ରାଜ୍ୟର ରାଜା ଥିଲେ ଓକ୍‌କାକା । ତାଙ୍କର ଥିଲେ ଚାରିପୁଅ । ସାନରାଣୀ ପଞ୍ଚମପୁତ୍ରକୁ ଜନ୍ମ ଦେବା ଅବସରରେ ରାଜାଙ୍କଠାରୁ ଏହି ବର ହାସଲ କରିନେଲେକ ସେହି ନବଜାତ ସନ୍ତାନଟି ଯେମିତି ଭବିଷ୍ୟତରେ ରାଜା ହେବ । ବଡ଼ରାଣୀଙ୍କ ଚାରିପୁଅ ଏହା ଶୁଣି ରାଜ୍ୟ ଛାଡ଼ି ଚାଲିଗଲେ ।

ଚାରି ରାଜପୁତ୍ର ସୈନ୍ୟସାମନ୍ତଙ୍କୁ ଧରି ପହଞ୍ଚିଲେ ହିମାଳୟ ପାଦଦେଶରେ । ଅନ୍ୟ କୌଣସି ନଗରୀ ଜୟ କରି ସେମାନେ ବସବାସ କରିବେ ବୋଲି ରାଜା ସେମାନଙ୍କ ସହ ସୈନ୍ୟଦଳ ପଠାଇଥିଲେ । କିନ୍ତୁ ସେମାନେ କପିଳ ନାମଧାରୀ ଜଣେ ଋଷିଙ୍କ ପରାମର୍ଶ କ୍ରମେ ଗୋଟିଏ ନୂତନ ନଗରୀ ସ୍ଥାପନ କଲେ ।





ଏହି ନୂଆ ନଗରୀର ନାମ ସେମାନେ ରଖିଲେ କପିଳବାସ୍ତୁ—ଋଷିଙ୍କ ସମ୍ମାନାର୍ଥେ । ସେମାନଙ୍କ ବସତି ଶାକ ବୃକ୍ଷରେ ଭରି ରହିଥିବାରୁ ସେମାନେ ଶାକ୍ୟ ନାମରେ ଅଭିହିତ ହେଲେ । ବହୁ ପୁରୁଷ ପରେ ସେ ବଂଶରେ ରାଜା ହେଲେ ଶୁଦ୍ଧୋଦନ । ଦିନେ ତାଙ୍କ ରାଣୀ ମାୟାଦେବୀ ସ୍ୱପ୍ନ ଦେଖିଲେ କି ଗୋଟିଏ ଶୁଭ୍ର ହସ୍ତୀ ତାଙ୍କ ତନୁରେ ପ୍ରବେଶ କରୁଛି ।



ଜ୍ୟୋତିଷମାନେ କହିଲେ ସେ ସ୍ୱପ୍ନର ଅର୍ଥ ହେଲା ରାଣୀ ଗୋଟିଏ ମହାନ୍ ଆତ୍ମାକୁ ଗର୍ଭରେ ଧାରଣ କରିବାକୁ ଯାଉଛନ୍ତି । ରାଣୀ ନିଜ ପିତୃଗୃହକୁ ଯିବା ବାଟରେ ଲୁମ୍ବିନି ନାମକ ଉଦ୍ୟାନରେ ବିଶ୍ରାମ କରୁଥିଲେ । ସେହିଠାରେ ଏକ ଶାଳବୃକ୍ଷର ଡାଳକୁ ଧରି ଠିଆ ହୋଇ-ଥିବା ବେଳେ ସେ ଗର୍ଭବେଦନା ଅନୁଭବ କଲେ ।

ସେହି ଉଦ୍ୟାନରେ ରାଣୀ ଏକ ପୁତ୍ର ସନ୍ତାନକୁ ଜନ୍ମ ଦେଲେ । ମାତା ଓ ସନ୍ତାନଙ୍କୁ କପିଳବାସ୍ତୁ ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼ିଲା । ଉଆସରେ ଓ ନଗରରେ ଉତ୍ସବ ଲାଗିଗଲା । ସେହି ଉତ୍ସବ ମୁଖର ପରିସ୍ଥିତିରେ ରାଣୀ ଶେଷ ନିଃଶ୍ୱାସ ତ୍ୟାଗ କଲେ ।





ନବଜାତ ସନ୍ତାନର ନାମ ସିଦ୍ଧାର୍ଥ; ଅର୍ଥାତ୍ ଯାହାର ଜୀବନର ଲକ୍ଷ୍ୟ ସିଦ୍ଧ ହୋଇଛି । ଦିନେ ଶିଶୁରାଜପୁତ୍ର ରାଜୋ-ଦ୍ୟାନରେ ବସିଥାନ୍ତି । ଗୋଟିଏ ଶରବିଦ୍ଧ ପକ୍ଷୀ ଆସି ତାଙ୍କ କୋଳରେ ପଡ଼ିଲା । ସେ ଶରଟିକୁ ବାହାର କରିଦେଇ ପକ୍ଷୀକୁ ଆଉଁସିବା ବେଳେ ସେଠାରେ ପହଞ୍ଚିଲେ ତାଙ୍କ ଜ୍ଞାତି-ଭାଇ ଦେବଦତ୍ତ ।

"ପକ୍ଷୀ ଶିକାର ମୁଁ କରିଛି । ମୋତେ ଦେଇଦିଅ ।" ଦେବଦତ୍ତ କହିଲେ । କିନ୍ତୁ ସିଦ୍ଧାର୍ଥ ଦେବାକୁ ନାସ୍ତି କଲେ । ଦୁହେଁ ଦରବାରକୁ ଗଲେ । "ଗୋଟିଏ ପ୍ରାଣୀ ଉପରେ କାହାର ଦାବି ଅଧିକ— ଯିଏ ତା'ର ପ୍ରାଣ ନିଏ ନା ଯିଏ ତା'ର ପ୍ରାଣ ରକ୍ଷା କରେ ?" ସିଦ୍ଧାର୍ଥ ପଚାରିଲେ । ମନ୍ତ୍ରୀମାନେ ସିଦ୍ଧାର୍ଥଙ୍କ ସପକ୍ଷରେ ରାୟ ଦେଲେ ।





ଦିନେ ଭୂମିପୂଜା ଉତ୍ସବ ହେଉଥାଏ । ସିଦ୍ଧାର୍ଥ ଚାଷ ଜମି ଦେଖିବାକୁ ବାହାରି-ଗଲେ । ବାଟରେ କେତେକ ଲୋକ ଏକ ସାପକୁ ପିଟିପିଟି ମାରିପକାଇବାର ସେ ଦେଖିଲେ । ସେ ବୁଝିଲେ ହିଂସା ମାନବର ନିତ୍ୟନୈମିତ୍ତିକ ଆଚରଣ । ଏହା ଉପଲବ୍ଧି କରି ସେ ବଡ଼ ଦୁଃଖ ଅନୁଭବ କଲେ ।

ପୃଥିବୀର ଅବସ୍ଥା ଦିନେ ତାଙ୍କୁ ବହୁତ ବ୍ୟଥିତ କଲା । ଲଢ଼େଇ, ହିଂସା, ଏସବୁ ବିନା କ'ଣ ଜୀବନଧାରଣ ସମ୍ଭବ ନୁହେଁ ? ନିଜ ପ୍ରବୃତ୍ତି ଚରିତାର୍ଥ କରିହିଁ ମଣିଷ କ'ଣ ବାସ୍ତବିକ ସୁଖୀ ହୋଇ ପାରିବ ? ଜୀବନର କ'ଣ ଅନ୍ୟ କୌଣସି ଲକ୍ଷ୍ୟ ନାହିଁ, ରହସ୍ୟ ନାହିଁ ? ଏହିସବୁ ପ୍ରଶ୍ନକୁ ନେଇ ସେ ଚିନ୍ତିତ ବା ଧ୍ୟାନମଗ୍ନ ହୋଇ ବସି ରହୁଥାନ୍ତି ।





ଜ୍ୟୋତିଷମାନେ କହିଲେ କି ସିଦ୍ଧାର୍ଥଙ୍କ ଜାତକ ଏପରି, ସେ ଘରେ ରହିଲେ ଜଣେ ରାଜାଧିରାଜ ହେବେ । ଯଦି ସେ ଆଧ୍ୟାତ୍ମମାର୍ଗକୁ ଯିବେ, ତେବେ ସେଥିରେ ସେ ହେବେ—ବୁଦ୍ଧ—ଅର୍ଥାତ୍ ସିଦ୍ଧଚେତା । ରାଜା ସିଦ୍ଧାର୍ଥଙ୍କୁ ଘରେ ରଖିବା ନିମନ୍ତେ ତାଙ୍କ ସକାଶେ ନାନା ବିଳାସବ୍ୟସନର ବ୍ୟବସ୍ଥା କରିଦେଲେ । ନୃତ୍ୟଗୀତ ଭିତରେ ତାଙ୍କୁ ଆମୋଦିତ ରଖାହେଲା ।

ସୁପବୁଦ୍ଧ ନାମକ ରାଜାଙ୍କର ଯଶୋଧାରା ନାମ୍ନୀ ଅସାମାନ୍ୟା ସୁନ୍ଦରୀ କନ୍ୟା ଥିଲେ । ରାଜକନ୍ୟାଙ୍କ ନିମନ୍ତେ ତାଙ୍କ ପିତା ସ୍ୱୟଂବରର ସୁବ୍ୟବସ୍ଥା କଲେ । ଶୁଦ୍ଧୋଦନଙ୍କ ନିର୍ଦ୍ଦେଶରେ ସିଦ୍ଧାର୍ଥ ସେଥିରେ ଭାଗ ନେବାକୁ ଗଲେ । ସମବେତ ରାଜପୁତ୍ରମାନଙ୍କ ଭିତରେ ଘୋଡ଼ାଦୌଡ଼; ଶରଚାଳନା ଇତ୍ୟାଦି ଅନେକ ପ୍ରକାର ପ୍ରତିଯୋଗିତା ହେଲା । ସିଦ୍ଧାର୍ଥ ସମସ୍ତଙ୍କୁ ଟପିଗଲେ ।





ରାଜକନ୍ୟା ଯଶୋଧାରା ସିଦ୍ଧାର୍ଥଙ୍କୁ ବରମାଳ୍ୟ ଦେଲେ । ବିବାହ ଯଥାବିଧି ଅନୁଷ୍ଠିତ ହେଲା । କନ୍ୟା ଧରି ସିଦ୍ଧାର୍ଥ କପିଲବାସ୍ତୁ ଫେରିଲେ । କପିଲବାସ୍ତୁ ପୁଣି ଉତ୍ସବ ମୁଖର ହେଲା । ରାଜା ଶୁଦ୍ଧୋଦନ ଏଇଆ ଭାବି ଖୁସୀ ହେଲେ ଯେ ତାଙ୍କ ପୁଅ ଏଣିକି ଘର ଛାଡ଼ିବାର ସମ୍ଭାବନା ନାହିଁ !



# ଅଦରକାରୀ

ମଣିପୁରର ରାମବାବୁ ତେଲ ବ୍ୟବସାୟ କରୁଥିଲେ । ସେଥିରେ ସେ ବେଶ୍ ଦୁଇ-ପଇସା ଆୟ କରି ସୁଖରେ ବସବାସ କରୁ-ଥିଲେ ।

ସ୍ୱଭାବରେ ସେ ଦରଦୀ ଥିଲେ ଓ ସମସ୍ତଙ୍କୁ ସାହାଯ୍ୟ କରିବାକୁ ସୁଖ ମଣୁଥିଲେ ।

ଜାଳେଣି ପାଇଁ ସେ ଗୋଟାଏ ଭଲ ବ୍ୟବସ୍ଥା କରିଥିଲେ । ସେ ବଜାରରୁ ପୂରା ଶୁଖିଲା ନଡ଼ିଆମାନ କିଣୁଥିଲେ । କତା ଛଡ଼ାହୋଇ ଯେଉଁ ନଡ଼ିଆ ବିକି ହେଉଥାଏ, ତାହା ସେ କିଣୁ ନ ଥିଲେ । ଶୁଖା ହୋଇ ଆସିବା ପରେ ସେ ନଡ଼ିଆ ଛଡାଇ କତାତକ ଜାଳେଣି ରୂପେ ବ୍ୟବହାର କରୁଥିଲେ । ନଡ଼ିଆଶସରୁ ତେଲ ବାହାର କରୁଥିଲେ ।

ତେବେ ନଡ଼ିଆସଢ଼େଇମାନ ସେ ଫିଙ୍ଗି-ଦେଉଥିଲେ । ସେସବୁ ଓଳପଟେ ଜମାହୋଇ ରହୁଥାଏ । କେବେକେମିତି ଗାଁର ପିଲାମାନେ ସେସବୁ ନେଇ ବାଟରେ ଖେଳୁଥିଲେ ଓ ଏଣେତେଣେ ଫିଙ୍ଗିଦେଉଥିଲେ । ବର୍ଷାଋତୁରେ ସେସବୁ ଭସିଯାଉଥିଲା । ଗାଁପାଖ ଦେଇ ଯାଇ-ଥିବା ନାଳରେପଡ଼ି କାହିଁ କୁଆଡ଼େ ଅଦୃଶ୍ୟ ହୋଇଯାଉଥିଲା । ଏମିତି ଚାଲିଥାଏ ବର୍ଷ ବର୍ଷ ।

ଦିନେ ମହେନ୍ଦ୍ର ବୋଲି ଜଣେ ପଡ଼ୋଶୀ ଗାଁର ଯୁବକ ତାଙ୍କ ଘର ଆଗ ଦେଇ ଯାଉଥିବା ବେଳେ ତାଙ୍କ ଓଳ ପଟେ ଜମା ହୋଇଥିବା ନଡ଼ିଆସଢ଼େଇଗଦା ଦେଖି ତାଙ୍କୁ ପଚାରିଲା, "ଆଜ୍ଞା, ଏସବୁ କରିବେ କ'ଣ ?"

"ଅଦରକାରୀ ବୋଲି ତ ଫୋପାଡ଼ିଦେଇଛୁ । କରିବ ଆଉ କ'ଣ ?" ରାମବାବୁ ଉତ୍ତର ଦେଲେ ।

ଲକ୍ଷ୍ମଣପ୍ରସାଦ



"ତାହାହେଲେ ମୁଁ ଏସବୁ ନେଇପାରେ ? ଅବଶ୍ୟ ଯତ୍‌କିଞ୍ଚିତ୍‌ ମୂଲ୍ୟ ଦେବ ।" ମହେନ୍ଦ୍ର କହିଲା ।

ରାମବାବୁ ଆଶ୍ଚର୍ଯ୍ୟ ହୋଇ ତାକୁ ଚାହିଁରହିଲେ । ମହେନ୍ଦ୍ର ଟିକିଏ ଅପ୍ରସ୍ତୁତ ହୋଇ କହିଲା, "ନା, ନା, ଆପଣଙ୍କର ପ୍ରୟୋଜନ ଥିଲେ ମୁଁ ନେବି ନାହିଁ । ମୁଁ ଭାବିଲି ବୋଧହୁଏ ଏସବୁ ଏମିତି ପଡ଼ିରହି ନଷ୍ଟ ହୋଇଯିବ । ତେଣୁ ମୁଁ ନେଇଯିବି ।"

"ତୁମେ କ'ଣ ପିଲା ହୋଇଛ ଯେ ସଡ଼େଇ ନେଇ ଖେଳିବ ?" ରାମବାବୁ ପଚାରିଲେ ।

"ନା, ଆଜ୍ଞା । ମୁଁ ଖେଳିବି କାହିଁ ? କାମରେ ଲଗାଇବି । ସେଇଥିପାଇଁ ତ କହୁଛି, ଯତ୍‌କିଞ୍ଚିତ ମୂଲ୍ୟ ଦେବାକୁ ମୁଁ ପ୍ରସ୍ତୁତ ।" ମହେନ୍ଦ୍ର କହିଲା ।

ରାମବାବୁ ହସିଲେ ଓ କହିଲେ, "ନା, ନା, ମୂଲ୍ୟ ଦେବା ଆବଶ୍ୟକ ନାହିଁ । ଅଦରକାରୀ ଜିନିଷର ପୁଣି ମୂଲ୍ୟ !"

ମହେନ୍ଦ୍ର କିନ୍ତୁ ଅଳ୍ପ କିଛି ପଇସା ଦେଇ କହିଲା, "ଆପଣଙ୍କ ପାଇଁ ସିନା ଅଦରକାରୀ ! ମୋ ପାଇଁ ଦରକାରୀ । ଅତଏବ ଯତ୍‌କିଞ୍ଚିତ୍‌ ଗ୍ରହଣ କରନ୍ତୁ ।"

ତେଣିକି ପ୍ରତି ପନ୍ଦରଦିନରେ ଥରେ ଆସି ମହେନ୍ଦ୍ର ଅଖା-ଭର୍ତ୍ତି ସଡ଼େଇ ନେଇଯାଏ । ଛଅମାସ ଗଲା । ରାମବାବୁ ଆଉ ତା'ର ଦେଖା ପାଇଲେ ନାହିଁ । ଶୁଣିଲେ, ମହେନ୍ଦ୍ର କୁଆଡ଼େ ନିଜ ଗାଁ ଛାଡ଼ି ଅନ୍ୟତ୍ର ଚାଲିଯାଇଛି ।

ତେଣିକି ସଡ଼େଇମାନ ପୁଣି ପୂର୍ବ ଭଳି ଜମାହେବାକୁ ଲାଗିଲା ଓ ବର୍ଷା ବେଳେ ନାଳ ଭିତରକୁ ଖସିଗଲା । ରାମବାବୁ ସେ ବ୍ୟାପାର ନେଇ ମୁଣ୍ଡବୁଲାଇବାର କୌଣସି କାରଣ ନ ଥାଏ ।

ଚାହିଁ ଚାହିଁ ପାଞ୍ଚବର୍ଷ ବିତିଗଲା । ରାମବାବୁ ମହେନ୍ଦ୍ର କଥା ପୂରା ଭୁଲିଗଲେ ।

ଦିନେ ରାମବାବୁ ସହରକୁ ଗଲେ । ସହରରୁ ଫେରିବା ବାଟରେ ସେ ଦିନେ ଗୋଟାଏ ସମୃଦ୍ଧ

ଗାଁ ଭିତର ଦେଇ ଆସୁଛନ୍ତି, ଆଖିରେ ପଡ଼ିଲା ଏକ ବିଶାଳ ତୋଟା । ନଡ଼ିଆ ସମେତ ନାନା ଜାତିର ଫଳରେ ତୋଟା ଉଚ୍ଛୁଳିପଡୁଛି । ତୋଟା ପଛକୁ ଗୋଟାଏ ବିରାଟ କୋଠା ।

ସେ ଠିଆହୋଇପଡ଼ିଲେ । "ଏ ତୋଟାର ମାଲିକ କିପରି ଫଳଗଛମାନଙ୍କର ଯତ୍ନ ଭଲ ଭାବରେ ନେବାକୁ ହୁଏ ସେ କଥା ଜାଣିଛନ୍ତି ।" ସେ ନିଜକୁ ଏ କଥା କହି ତୋଟା କଡ଼େ କଡ଼େ ପଦଚାରଣା କରୁଥାନ୍ତି ।

କୋଠାର ପରିପାଟି ମଧ୍ୟ ତାଙ୍କୁ ଆକୃଷ୍ଟ କଲା । ସେ ଦେଖିଲେ ପୁରୁଣା ହେଲେ ବି ତାକୁ ନୂଆ ଭଳି ରଖାଯାଇପାରିଛି ।



ସେ ଅନାଇ ରହିଛନ୍ତି, ଜଣେ ଲୋକ ଦୌଡ଼ିଆସି ତାଙ୍କୁ କହିଲା, "ବାବୁ, ଆପଣଙ୍କୁ ଆମ ଜମିଦାର ଡାକୁଛନ୍ତି ?"

"ତୁମ ଜମିଦାର କାହିଁକି ଡାକୁଛନ୍ତି ? ସେ ତ ମୋତେ ଚିହ୍ନିବା କଥା ନୁହେଁ ।" ରାମବାବୁ ଆଶ୍ଚର୍ଯ୍ୟ ହୋଇ କହିଲେ ।

"ବୋଧହୁଏ ଚିହ୍ନିଥିବେ । ତାଙ୍କ କଥାରୁ ତ ସେମିତି ମନେ ହେଲା ।" ଲୋକଟି କହିଲା ।

ରାମବାବୁ କୋଠା ପାଖରେ ପହଞ୍ଚିଲା ମାତ୍ରେ ଦୁଇମହଲା ଉପରୁ ତାଙ୍କୁ ପାଛୋଟି ନେବାକୁ ଜଣେ ଯୁବକ ଓହ୍ଲାଇଆସିଲେ । ସେ ସୁନ୍ଦର ରେଶମୀ ବସ୍ତ୍ର ପିନ୍ଧିଥାନ୍ତି ।

"ମହେନ୍ଦ୍ର ! ତୁମେ ଏଠାରେ !" ରାମବାବୁ ବିସ୍ମୟ ଭରେ କହିଲେ ।

ମହେନ୍ଦ୍ର ହସିଦେଇ ରାମବାବୁଙ୍କ ପରିଚର୍ଯ୍ୟା କଲା ଓ ତା'ପରେ ଗପିଲା :

"ଆପଣଙ୍କ ମନରେ ବହୁତ କୌତୂହଳ ହେଉଥିବା ସ୍ୱାଭାବିକ । ଯାହା ହେଲା, ତାହା ଅବଶ୍ୟ ନାଟକୀୟ । ଦିନେ ଜମିଦାର ହରିସିଂହ ଆମ ଗାଁ ଦେଇ ଘୋଡ଼ାଗାଡ଼ିରେ ଯାଉଥିଲେ । ଗୋଟାଏ ଗାତ ଯୋଗୁଁ ଗାଡ଼ି ଓଲଟି ପଡ଼ୁଥିଲା । ଦୈବକୁ ମୁଁ ସେଠାରେ ଥିଲି । ଗାଡ଼ିକୁ ଧରିପକାଇ ମୋ ଶକ୍ତି ଦେଇ ସଳଖ କରିଦେଲି । ଜମିଦାର ବାବଡ଼େଇଯାଇଥିଲେ । ମୁଁ

ଓ ସହସା ତାଙ୍କୁ ଧରି ପୁଣି ଗାଡ଼ିରେ ବସାଇଲୁ । ମୁଁ ତାଙ୍କ ସାଥିରେ ତାଙ୍କ ଘରଯାଏ—ଅର୍ଥାତ୍ ଏଯାଏ—ଆସିଲି । ବାଟରେ ସେ ମୋଠାରୁ ଆମ ଘରର ହାଲଚାଲ ଶୁଣିଲେ । ମୋ ଜେଜେବାପା ଛୋଟିଆ ଜମିଦାର ଥିଲେ ଓ ହରିସିଂହ ପରିବାର ସହ ଆମର ସମ୍ପର୍କ ଥିଲା । ମୋ ବାପାଙ୍କ ସମୟକୁ ଆମେ ଗରିବ ହୋଇଯାଇଥିଲୁ । ହରିସିଂହ ମୋ ପରିଚୟ ପାଇ ମୋ ଅବସ୍ଥା ଯୋଗୁ ଦୁଃଖ ପ୍ରକାଶ କଲେ ଓ ମୋତେ ସାହାଯ୍ୟ କରିବାକୁ ଚାହିଁଲେ । ମୁଁ କହିଲି କି ମୋ ବୁଦ୍ଧି ଥିଲେ ଅଦରକାରି ଜିନିଷରୁ ବି ମୁଁ ବେପାର କରି ଉନ୍ନତି କରିପାରିବି । ବୁଦ୍ଧି ନ ଥିଲେ ସାହାଯ୍ୟ ଦେଲେ ବି ସବୁ ବୁଡ଼ାଇଦେବି । ଜମିଦାର ମୋତେ କହିଲେ ସତରେ ଯଦି ମୁଁ ଅଦରକାରି ଜିନିଷରୁ ଆୟ କରି ଦେଖାଇଦେଇ ପାରିବି, ତେବେ ସେ ମୋତେ ତାଙ୍କର ଏକମାତ୍ର ସନ୍ତାନ କନ୍ୟାଟି ସହ ଅତି ଆନନ୍ଦରେ ବିବାହ ଦେବେ ।

"ଆପଣଙ୍କଠାରୁ ସଢ଼େଇ ସଂଗ୍ରହ କରି ଦୁଇ ଗାଁଉଲି ଶିଳ୍ପୀଙ୍କ ସହାୟତାରେ ସେଥିରେ ନାନା ଜିନିଷ ତିଆରି କଲି, ଯଥା ଖେଳଣା, ମୁଖା, ଡଙ୍କି, ଗିନା, ଆହୁରି କେତେ କ'ଣ । ସେସବୁ ରଙ୍ଗବେରଙ୍ଗର ଜିନିଷ ସହରରେ ବିକ୍ରି ହେଲା । ଯେତେବେଳେ ଜମିଦାର ସ୍ୱୟଂ ସହରକୁ ଯାଇ ମୋର କୃତିତ୍ୱ ଦେଖିଲେ, ସେତେବେଳେ ସେ ତାଙ୍କ ସର୍ତ୍ତ ରକ୍ଷା କରି ମୋତେ କନ୍ୟାଦାନ କଲେ । ସମ୍ପ୍ରତି ତାଙ୍କ ପରଲୋକ ହେଲା । ମୁଁ ତାଙ୍କର ଏ କୋଠାରେ ରହୁଛି ।"

"ଭାଗ୍ୟର ବିଚିତ୍ର ଗତି ସାଙ୍ଗକୁ ତୁମର ଦୃଢ଼ ନିଷ୍ଠା ଓ ଆତ୍ମବିଶ୍ୱାସ ମିଶି ଏ ମଧୁର ଘଟଣା ସମ୍ଭବ ହେଲା !" କହିଲେ ରାମବାବୁ ।

ମହେନ୍ଦ୍ରର ଅନୁରୋଧ ଏଡ଼ାଇ ନ ପାରି ରାମବାବୁ ସେଦିନ ତା' ଆତିଥ୍ୟ ଗ୍ରହଣ କଲେ ।





# ସଦାଚାରୀ

ରମାନାଥ ଥିଲେ ଜଣେ ଧନଲୋକ । ଦିନେ ସନ୍ଧ୍ୟା ପରେ ସେ ଘରକୁ ଏକା ଫେରୁଥିବା ବେଳେ ଦୁଇଚାରିଜଣ ଡାକୁ ତାଙ୍କୁ ଆକ୍ରମଣ କରି, ଛୁରି ଦେଖାଇ ତାଙ୍କର ସବୁ ଟଙ୍କା ଓ ମୁଦି ଜବରଦସ୍ତ ଛଡ଼ାଇ ନେଲେ । ସେମାନେ ରମାନାଥଙ୍କୁ ଛାଡ଼ିଦେବା ମାତ୍ରେ ସେ ଚିତ୍କାର କଲେ, "ରକ୍ଷାକର, ରକ୍ଷାକର ।"

ଏହି ସମୟରେ ପାଟି ଶୁଣି ହଠାତ୍ ଜଣେ ଯୁବକ ଆସି ଆସି ଡାକୁମାନଙ୍କ ସହିତ ମାଡ଼ଗୋଳ କରି ତାଙ୍କୁ ତଡ଼ିଦେଲା ଓ ବୁଢ଼ା ରମାନାଥଙ୍କୁ ତାଙ୍କ ହାତ ଧରି ଉଠାଇଲା ।

ରମାନାଥ ସେହି ଯୁବକକୁ ହାତଯୋଡ଼ି କହିଲେ, "ପୁଅ, ତୁମେ ଠିକ୍ ସମୟରେ ନ ଆସିଥିଲେ ସେମାନେ ଛୁରିମାରି ମୋତେ ମାରିପକାଇଥା'ନ୍ତେ । ମୁଁ ଜୀବନରେ ତୁମର ଏ ଉପକାର ଭୁଲିପାରିବି ନାହିଁ । ଦୟାକରି ମୋତେ ମୋ ଘରେ ଛାଡ଼ିଆସ ।"

"ମହାଶୟ, ଆପଣ ଏ କ'ଣ କହୁଛନ୍ତି ? ଆପଣ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି । ବିପଦବେଳେ ଜଣେ ଅନ୍ୟ ଜଣକୁ ରକ୍ଷା କରିବା ତ ଧର୍ମ । ଚାଲନ୍ତୁ ମୁଁ ଆପଣଙ୍କୁ ଘରେ ଛାଡ଼ି ଆସିବି ।" ଯୁବକ ବିନମ୍ର ଭାବରେ କହିଲା ।

ରାସ୍ତାରେ ଚାଲୁ ଚାଲୁ ରମାନାଥ ବହୁତ କଥା ଯୁବକ ବିଷୟରେ ତାକୁ ପଚାରି ବୁଝିନେଲେ । ଯୁବକର ନାମ ଥିଲା ପ୍ରଫୁଲ୍ଲ । ପିଲାଦିନୁ ତା'ର ମା'ବାପା ମରିଯାଇଛନ୍ତି । ଗାଁବାଲା ଓ ବନ୍ଧୁବାନ୍ଧବଙ୍କ ସାହାଯ୍ୟରେ ସେ ପଢ଼ାପଢ଼ି କରିଛି । ଏବେ ଚାକିରିଟିଏ ଖୋଜି ଏ ଗାଁକୁ ଆସିଥିଲା । ହେଲେ ଏବେ କେଉଁଠି ସ୍ଥାୟୀ ଭାବରେ ରହିବା ପାଇଁ ସ୍ଥାନ ପାଉନ ।

ଶିବଚରଣ



ଘରେ ପହଞ୍ଚି ରମାନାଥ ତାଙ୍କ ଝିଅକୁ ସବୁ ଘଟଣା ଶୁଣାଇ କହିଲେ, "ପ୍ରଫୁଲ୍ଲ ଠିକ୍ ସମୟରେ ସେଠାରେ ପହଞ୍ଚି ନ ଥିଲେ ଏବେ ମୋର ଶବ ଏଠାକୁ ଅଣା ହୋଇଥା'ନ୍ତା ।"

ରମାନାଥଙ୍କ ଝିଅ କଲ୍ୟାଣୀର ଆଖି ଲୁହରେ ଛଳଛଳ ହୋଇଉଠିଲା । ସେ କହିଲା, "କେତେ ଥର ମୁଁ ଆପଣଙ୍କୁ କହିଛି ଅନ୍ଧାର ହେବା ପରେ ଏକା ଯିବାଆସିବା କରିବେ ନାହିଁ । କିନ୍ତୁ ମୋ କଥା ମାନିବେ ନାହିଁ । ଆଜି ମୋର ଭାଗ୍ୟବଳରେ ଆପଣ ଆସି ଘରେ ପହଞ୍ଚିଛନ୍ତି ।" ତା'ପରେ ସେ ପ୍ରଫୁଲ୍ଲ ପ୍ରତି ମଧ୍ୟ କୃତଜ୍ଞତା ଦେଖାଇଲା ।

"ଏବେ ମୁଁ ଯାଏ ।" ପ୍ରଫୁଲ୍ଲ କହିଲା ।

"ଆରେ, ଏ କି କଥା ? ଏ ଅନ୍ଧାରରେ ପୁଣି ତୁମେ ବସା ଖୋଜି କୁଆଡ଼େ ବୁଲିବ ? ତୁମେ ତ ଆମର ଅତିଥି ।" ରମାନାଥ କହିଲେ ।

କଲ୍ୟାଣୀ ଶୀଘ୍ର ଯାଇ ପ୍ରଫୁଲ୍ଲ ପାଇଁ ଗୋଟିଏ ବଖରା ସଫା କରିଦେଲା ।

ଖାଇବସିବା ବେଳେ ରମାନାଥ ପ୍ରଫୁଲ୍ଲକୁ କହିଲେ, "ପୁଅ, ମୋ ପାଖରେ ଲକ୍ଷେଟଙ୍କାର ସମ୍ପତ୍ତି ଅଛି । କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ମୁଁ ମୋର ଏକମାତ୍ର ସନ୍ତାନ କଲ୍ୟାଣୀକୁ ଏକ ସଦାଚରିତ୍ର ବ୍ୟକ୍ତି ସହିତ ବିବାହ ନ ଦେଇଛି ସେତେଦିନ ପର୍ଯ୍ୟନ୍ତ ମୁଁ ଶାନ୍ତି ପାଇପାରିବି ନାହିଁ ।"

ତା'ପରଦିନ ସକାଳୁ ପ୍ରଫୁଲ୍ଲ ରମାନାଥଙ୍କୁ କହିଲା, "ଦେଖନ୍ତୁ ଆଜ୍ଞା, ଏବେ ମୁଁ ଯାଉଛି, କୌଣସି ଚାକିରିର ସନ୍ଧାନ କରିବି ।"

"ଆଉ ଖୋଜିବାର ଅଛି କ'ଣ ? ଭାବିନିଅ ଯେ ତୁମକୁ ଚାକିରି ମିଳିଗଲା । ଏ ଗାଁରେ ମୋର ଦୁଇଟି ଲୁଗା ଦୋକାନ ଅଛି । ଗୋଟିଏ ଦୋକାନର ଦେଖାଶୁଣା କରିବା ଦାୟିତ୍ୱ ମୁଁ ତୁମକୁ ଦେଲି ।" ରମାନାଥ କହିଲେ ।

ପ୍ରଫୁଲ୍ଲ ସେପରି ଅନିଚ୍ଛାର ସହିତ ତାଙ୍କ କଥା ରଖିଲା । କଲ୍ୟାଣୀ ଭାବିଲା ବାପାଙ୍କର ଭଲ ବୁଦ୍ଧି । କିନ୍ତୁ ପ୍ରଫୁଲ୍ଲ ସବୁବେଳେ ଘରେ ରହି



ତାହା ମଧ୍ୟ କଲ୍ୟାଣୀ ଭୁଲିନ ଥିଲା । କାରଣ ରମାନାଥଙ୍କ ଉପସ୍ଥିତିରେ ସେ କଲ୍ୟାଣୀ ସହିତ ଭଲ ବ୍ୟବହାର କରେ । କିନ୍ତୁ ସେ ନ ଥିବା ବେଳେ ନାନାରକମ ବ୍ୟବହାର କରି କଲ୍ୟାଣୀକୁ ନିଜ ଆଡ଼କୁ ଆକୃଷ୍ଟ କରିବାକୁ ଚେଷ୍ଟା କରେ । କଲ୍ୟାଣୀ ମନେ ମନେ ଖୁବ୍ ବିରକ୍ତ ହେଉଥାଏ ।

ଦିନେ କଲ୍ୟାଣୀ ବାପାଙ୍କୁ ପଚାରିଲା, "ବାପା ପ୍ରଫୁଲ୍ଲ ଆମ ଘରେ କେତେଦିନ ରହିବ ? ତା' ପାଇଁ ଗୋଟିଏ ଅଲଗା ଘରର ବନ୍ଦୋବସ୍ତ କରନ୍ତୁ ।"

"ତା' ବି ଠିକ୍ । ଜଣେ ବାହାର ଲୋକ ଭାବରେ ସେ ଆଉ କେତେ ଦିନ ରହିପାରିବ ଆମ ଘରେ ? ସେ ଗୋଟିଏ ସଦାଚାରୀ ପିଲା । ମୁଁ ଭାବୁଛି ତୋ ସହିତ ତା'ର ବିବାହ ଦେଇ ତାକୁ ଘରଜୁଆଇଁ କରି ରଖିବି । ତୋର ମତ କ'ଣ ?" ରମାନାଥ ପଚାରିଲେ ।

ଏ କଥା ଶୁଣି କଲ୍ୟାଣୀ ଆଶ୍ଚର୍ଯ୍ୟ ହୋଇଗଲା । ସେ ଜାଣିବା ପୂର୍ବରୁ ପ୍ରଫୁଲ୍ଲ ବାପାଙ୍କ ସହିତ ଏ ବିଷୟରେ ଆଲୋଚନା କରିଛି । ଏ କଥା କଲ୍ୟାଣୀକୁ ଅପମାନଜନକ ଲାଗିଲା । ସେ ତା'ର ଜଣେ ସାଙ୍ଗର ଭାଇ ବ୍ରଜେଶକୁ ବିବାହ କରିବ ବୋଲି ମନେ ମନେ ଠିକ୍ କରିଥାଏ । କିନ୍ତୁ ଏ କଥା ବାପାଙ୍କୁ କେବେ ଜଣାଇ ନ ଥାଏ । କାରଣ ବ୍ରଜେଶର ଜାତି ତାଙ୍କ ଜାତିଠୁ ଭିନ୍ନ ।

କଲ୍ୟାଣୀ ବାପାଙ୍କୁ ପଚାରିଲା, "ଆପଣ କିପରି ଜାଣିଲେ ଯେ ସେ ସଦାଚାରୀ?"

ରମାନାଥ ରାଗିଯାଇ କହିଲେ, "ମୁଁ ମଣିଷର ପ୍ରକୃତି ଜାଣେ । ଆସନ୍ତା ମାସରେ ପ୍ରଫୁଲ୍ଲ ସହିତ ତୋର ବିବାହ ହେବ । ଏ କଥା ନିଶ୍ଚିତ ।"

ବାପାଙ୍କ ମୁହଁରେ କୌଣସି କଡ଼ାକଥା କହି ନ ପାରି ସେ ବାହାରକୁ ଆସିଲା । ଦେଖିପାରିଲା କାନ୍ଥ କଡ଼ରେ ଠିଆହୋଇ ପ୍ରଫୁଲ୍ଲ ସେମାନଙ୍କର କଥାବାର୍ତ୍ତା ଶୁଣୁଥିଲା । କଲ୍ୟାଣୀକୁ ଦେଖି ନିଜ ବଖରା ଭିତରକୁ ଚୁପ୍ କରି ପଶିଗଲା ।



ସେଦିନ ରାତିରେ କଲ୍ୟାଣୀ ଶୋଇପାରିଲା ନାହିଁ । ଭାବିଲା ନିଜ କର୍ତ୍ତବ୍ୟ ବିଷୟରେ ରାଜେଶ ସହିତ ଆଲୋଚନା କରିବ । ଏଇ ସମୟରେ ହଠାତ୍ ସେ ଶୁଣିଲା ପ୍ରଫୁଲ୍ଲ ରହୁଥିବା ବଖରା ଭିତରୁ ଚିତ୍କାର । କଲ୍ୟାଣୀ ଚେଇଁଥିଲା । ସେ ସେଠାକୁ ଦୌଡ଼ିଯାଇ ଦେଖିଲା ପ୍ରଫୁଲ୍ଲ ଖଟ ଉପରେ ଗୋଟାଏ ପଟକୁ ଉଠିବସିଛି ଅନ୍ୟ ପଟରେ ଧଳା ବିଲେଇଟାଏ ବସିଛି । କଲ୍ୟାଣୀକୁ ଦେଖି ପ୍ରଫୁଲ୍ଲ କହିଲା, "ତାକୁ ତଡ଼ିଦିଅ ।"

"ସେ କିଛି କରିବ ନାହିଁ, ପୋଷା ବିଲେଇ ।" ଏ କଥା କହି କଲ୍ୟାଣୀ ବିଲେଇକୁ ହାତରେ ଉଠାଇନେଲା ।

"ମୁଁ ବିଲେଇକୁ ଘୃଣା କରେ, ତା'ମାନେ ନୁହେଁ ଯେ ମୁଁ ଡରେ ।" ପ୍ରଫୁଲ୍ଲ କହିଲା ।

କଲ୍ୟାଣୀ କିଛି ନ କହି ବିଲେଇକୁ ହାତରେ ଧରି ଚାଲିଗଲା । ପରଦିନ କଲ୍ୟାଣୀ ରାଜେଶକୁ ସବୁକଥା କହିଲା । "ପ୍ରଫୁଲ୍ଲ ମୋ ବାପାଙ୍କୁ ଜାଲରେ ପକାଇଛି । ଯିଏ ବିଲେଇ ଦେଖି ଡରୁଛି ସେ କିପରି ଡାକୁଙ୍କ ପାଖରୁ ବାପାଙ୍କୁ ରକ୍ଷା କଲା ?" ସେ ପ୍ରଶ୍ନ କଲା ।

"ମୁଁ ଏସବୁ ରହସ୍ୟର ସନ୍ଧାନ କରିବି । କିନ୍ତୁ ତା'ପୂର୍ବରୁ ଆମକୁ କିଛି କରିବାକୁ ପଡ଼ିବ ।" ଏ କଥା କହି ରାଜେଶ କିଛି କଥା ଚୁପ୍ ଚୁପ୍ କଲ୍ୟାଣୀକୁ କହିଲା ।

ପରଦିନ କଲ୍ୟାଣୀ ପ୍ରଫୁଲ୍ଲକୁ କହିଲା, "ମୁଁ ପାହାଡ଼ ଉପରେ ଥିବା କାମାକ୍ଷୀ ମନ୍ଦିରକୁ ଯିବାକୁ ଚାହୁଁଛି । ମୋ ସହିତ ତୁମେ ଯିବ କି ?"

ପ୍ରଫୁଲ୍ଲ ଖୁବ୍ ଖୁସୀ ହୋଇ ତା' ସହିତ ଗଲା । ଦେବୀଦର୍ଶନ ଶେଷ କରି ପାହାଡ଼ରୁ ଓହ୍ଲାଇବା ବେଳକୁ ଅନ୍ଧାର ହୋଇଗଲାଣି । ପୂର୍ବ ଯୋଜନା ଅନୁସାରେ ରାଜେଶ ଗୋଟିଏ ଗଛ ଉହାଡ଼ରୁ ଚଟ୍‌କରି ବାହାରି କଲ୍ୟାଣୀ ବେକରୁ ହାର ଛିଣ୍ଡାଇ ନେଲା ।

କଲ୍ୟାଣୀ ଚିତ୍କାର କଲା—"ଚୋରକୁ ଧର, ଏ ହାର ତ ଦଶହଜାର ଟଙ୍କା ମୂଲ୍ୟର ।" ରାଜେଶ ପଳାଇବାର କିଛି ଚେଷ୍ଟା କରୁନାହିଁ ।

ହାତରେ ହାର ଧରି ପ୍ରଫୁଲ୍ଲକୁ ପଚାରୁଛନ୍ତି, "ଏଇ! ମୋତେ ଧରିବୁ ? ଆସ ତ ଦେଖି, ତୋ ଗଳା ମୋଡ଼ି ପାହାଡ଼ ତଳକୁ ଫୋପାଡ଼ି ଦେବି ।"

ପ୍ରଫୁଲ୍ଲ ଏପରି ଧମକ ପାଇ ମଧ୍ୟ ନିଜ ସ୍ଥାନରୁ ଟିକିଏ ବି ହଲିଲା ନାହିଁ । ଡରରେ ତାହାର ଆପାଦମସ୍ତକ ଥରୁଥାଏ । କେହି ରାସ୍ତାରେ ଆସୁଥିବାର ଦେଖି ରାଜେଶ ସେଠାରୁ ଚାଲିଗଲା ।

"ସୁନାହାର ତ ଗଲା, ସାହାହେଉ ପ୍ରାଣ ରହିଗଲା ! ଚାଲ ଚାଲ ।" କଲ୍ୟାଣୀ କହିଲା ।

ପରଦିନ କଲ୍ୟାଣୀ ଯେତେବେଳେ ରାଜେଶ ଘରେ ପହଞ୍ଚେ, ସେ କହିଲା, "ଏବେ ପୂର୍ଣ୍ଣରୂପେ ପ୍ରମାଣ ହୋଇଗଲା କି ପ୍ରଫୁଲ୍ଲ ଏକ ଧୂର୍ତ୍ତ ବ୍ୟକ୍ତି । ତୁମ ବାପାଙ୍କୁ ଡକାୟତ ଧରିବା ନାଟକ ରଚନା କରି ସେ ତୁମ ଘରକୁ ଆସିଛି କେବଳ ସମ୍ପତ୍ତି ଲୋଭରେ । ମୁଁ ତା'ର ଏ ଖେଳ ବନ୍ଦ କରୁଛି । ତୁମେ ଗୋଟାଏ କାମ କର ।" ତା'ପରେ ରାଜେଶ କଲ୍ୟାଣୀକୁ କିଛି ଉପାୟ ବତାଇଲା ।

ପରଦିନ ରାଜେଶ ରମାନାଥଙ୍କୁ ଦେଖାକରି କହିଲା, "ମହାଶୟ, ମୋ ନାମ ରାଜେଶ । ମୁଁ ଆପଣଙ୍କ ଭଲ ପାଇଁ ଆପଣଙ୍କୁ ଗୋଟାଏ କଥା କହିବି । ଯେଉଁ ପ୍ରଫୁଲ୍ଲକୁ ଆପଣ ଜ୍ୱାଇଁ କରିବାକୁ ବସିଛନ୍ତି ତା'ର ପ୍ରକୃତ ରୂପ ଦେଖିବେ ଆସନ୍ତୁ ମୋ ସହିତ ।"



ସେ ରାଜେଶ ସହିତ ଗଲେ । ଏଣେ ଅନ୍ଧାର ହେବା ପରେ ପ୍ରଫୁଲ୍ଲ ଘରକୁ ଆସିବା ମାତ୍ରେ କଲ୍ୟାଣୀ କହିଲା, "ତୁମକୁ ଖୋଜିବାକୁ ଦୁଇଜଣ ବ୍ୟକ୍ତି ଆସିଥିଲେ । କହୁଥିଲେ କି ସେମାନେ ତୁମର ବଡ଼ ଉପକାର କରିଛନ୍ତି । ତାଙ୍କର ପାଉଣା ଏପର୍ଯ୍ୟନ୍ତ ସେମାନେ ପାଇନାହାନ୍ତି । ବୁଢ଼ୀ କହିଛନ୍ତି ତୁମେ ଶୀଘ୍ର ତାଙ୍କୁ ଦେଖାକର ।" ଏକଥା କହି କଲ୍ୟାଣୀ ରାଜେଶ ଘରଆଡ଼କୁ ସ୍ଥାନ ଦେଖାଇ ଦେଲା ।

ଏ କଥା ଶୁଣି ପ୍ରଫୁଲ୍ଲର ମୁହଁ ଫିକା ପଡ଼ିଗଲା । ସେ ସଙ୍ଗେସଙ୍ଗେ ରାଜେଶ ଘରଆଡ଼କୁ ଚାଲିଲା । ରାଜେଶ ଘରଭିତରେ ଦୀପ ଜଳାଇ

ରମାନାଥଙ୍କୁ ସାବଧାନ କରିଦେଲା, "ଆପଣ ପାଖ ଘରେ ଲୁଚିଯା'ନ୍ତୁ । ସେ ଆସୁଛି । ଆଉ ତା' କଥା ମନଦେଇ ଶୁଣନ୍ତୁ ।"

ଘରଭିତରେ ପ୍ରବେଶ କରିବା ମାତ୍ରେ ପ୍ରଫୁଲ୍ଲ ଅନ୍ଧାରରେ ମଣିଷ ଆକୃତି ଦେଖିପାରିଲା ଓ ରାଗିଯାଇ କହିଲା, "ତୁମେମାନେ ତ ଭାରି ବଦ୍‌ମାସ୍ ! କାହିଁକି ମୋ ଭାବି ଶ୍ୱଶୁରଘରକୁ ଯାଇଥିଲ । ସେମାନେ ଚିହ୍ନିପାରିଥିଲେ ତ କଥା ସରିଥିଲ ? ତୁମ କାମର ପୁରସ୍କାର ଖୁବ୍ ଦେଇଛି । ପୁଣି ତୁହିଁ ତ ମୋର ବିବାହ ପରେ ବୁଢ଼ାଠୁ ସବୁ ସମ୍ପଦ ନେବା ପରେ ତୁମକୁ କିଛି ଦେବି । ଏବେ କିଛି ନାହିଁ । କିଛିଦିନ ଧୈର୍ଯ୍ୟ ଧରି ରୁହ । କିନ୍ତୁ ଏ ଭିତରେ ତୁମେ-ମାନେ ଏଠାକୁ ଆସିଲେ କାଣିକଉଡ଼ିଟିଏ ସୁଦ୍ଧା ପାଇବ ନାହିଁ ।" ପ୍ରଫୁଲ୍ଲର ଧମକ ସମାପ୍ତ ହେବା ମାତ୍ରେ ଦୀପ ଜାଳି ଘରଭିତରୁ ବାହାରି-ଆସିଲେ ରାଜେଶ ଓ ରମାନାଥ ।

ପ୍ରଫୁଲ୍ଲ ପ୍ରଥମେ କାବା ହୋଇ ଜୁଳୁଜୁଳୁ ଅନାଇ ରହିଲା । ତା'ପରେ ଦେଖାଗଲା ସେ ଥରୁଛି । କପାଳରେ ବିନ୍ଦୁ ବିନ୍ଦୁ ଝାଳ । ରାଜେଶ ହସିଉଠିଲା ଓ ପ୍ରଫୁଲକୁ ଝିଙ୍କିନେଇ କହିଲା, "ବାଃ, ବେଶ୍ ବାହାଦୁର ଅଛ ବୋଲିବାକୁ ହେବ ।"

କଲ୍ୟାଣୀ ମଧ୍ୟ ସେତିକିବେଳେ ସେଠାରେ ପହଞ୍ଚି କହିଲା, "ବାପା, ତୁମେ ଏଇ ଦଗାବାଜ୍‌କୁ ସଦାଗ୍ରହୀ କହୁଥିଲ । ଏବେ ରାଜେଶ ନ ଥିଲେ ଆମ ଅବସ୍ଥା କ'ଣ ହୋଇଥା'ନ୍ତା ?"

ରମାନାଥ ପ୍ରଫୁଲ୍ଲକୁ ଘୃଣାର ସହିତ ଚାହିଁ କହିଲେ, "ମୋ ସମ୍ମୁଖରୁ ଦୂରକୁ ଯା, ନ ହେଲେ ସିପାହି ଡାକି ଧରାଇଦେବି ।" ପ୍ରଫୁଲ୍ଲ ତଳକୁ ମୁହଁକରି ଶୀଘ୍ର ଶୀଘ୍ର ସେ ସ୍ଥାନ ଛାଡ଼ି ପଳାଇଲା । ତା'ପରେ ରମାନାଥ ରାଜେଶର ସତ୍‌ସାହସରେ ମୁଗ୍‌ଧ ହୋଇ ତାଙ୍କୁହିଁ ନିଜର ଜ୍ୱାଇଁ କରିବେ ବୋଲି ନିଶ୍ଚିତ କଲେ ।





# ଇଚ୍ଛାପୂରଣ !

ଶାରଦା ବୋଲି ଜଣେ ବିଧବା ସ୍ତ୍ରୀଲୋକ ଥାଏ । ତା'ର ପୁଅ ଆନନ୍ଦ କିଛିଦିନ ପୂର୍ବେ ବିବାହ କରିଥାଏ । କିନ୍ତୁ ଶାରଦା ଏତେ ଲୋଭୀ ଓ କଞ୍ଜୁସ ଥିଲି ଯେ ଆନନ୍ଦର ଶ୍ୱଶୁର-ଠାରୁ ନାନା ଉପାୟରେ ଟଙ୍କା ସୁନା ଆଦାୟ କରିକରି ତାଙ୍କୁ ସର୍ବସ୍ୱାନ୍ତ କରିସାରିଥାଏ ।

ଆନନ୍ଦ ଶ୍ୱଶୁରଘରକୁ ଯିବା ପୂର୍ବରୁ ଦିନେ ଶାରଦା ତାକୁ ଏକାନ୍ତରେ ଡାକି କହିଲି, "ପୁଅ, ଏଥରକ ଶ୍ୱଶୁର ପାଖରେ ସୁନାମୁଦିଟିଏ ଦାବି କରିବୁ । ତୁ ତ ନୂଆ ଜ୍ୱାଇଁ, ତେଣୁ ତୋ ଇଚ୍ଛା ନିଶ୍ଚୟ ସେମାନେ ପୂରଣ କରିବେ ।"

ଆନନ୍ଦ ଟିକିଏ ଚିଡ଼ିଉଠି କହିଲା, "ମା, ମୋ ବିବାହରେ ଶ୍ୱଶୁର ଗୁଡ଼ାଏ ଖର୍ଚ୍ଚ କରିଛନ୍ତି । ଏବେ ମଧ୍ୟ କେତେକ ଋଣ ଟଙ୍କା ପରିଶୋଧ କରିନାହାନ୍ତି । ପୁଣି ଏପରି ଅବସ୍ଥାରେ ସୁନାମୁଦି ମାଗିବାଟା କ'ଣ ଯଥାର୍ଥ ହେବ ?"

"ପୁଅ, ମୁଁ ତୋ ହାତରେ ସୁନାମୁଦି ପିନ୍ଧି-ଥିବାର ଦେଖିବାକୁ ଚାହୁଁଛି । ମା'ର ଇଚ୍ଛାକୁ ପୁଅ ପୂରଣ କରେ । ସ୍ତ୍ରୀର ଇଚ୍ଛାକୁ ସ୍ୱାମୀ ପୂରଣ କରେ ।" ଶାରଦା କହିଲି ।

ଆନନ୍ଦ ମା' କଥା ମାନିଗଲା । ଦୀପାବଳୀକୁ ସେ ତା' ସ୍ତ୍ରୀକୁ ଧରି ଶ୍ୱଶୁରଘରକୁ ଗଲା । ଉତ୍ସବ ଶେଷ ହେବାର ଚାରିଦିନ ପର୍ଯ୍ୟନ୍ତ ସେ ସେଠାରେ ରହି ତା'ପରେ ପଞ୍ଚମଦିନ ନିଜ ଘରକୁ ଫେରିଆସିଲା ।

ପୁଅ ହାତରେ ସୁନାର ମୁଦି ଦେଖି ଶାରଦା ଖୁବ୍ ଖୁସୀ ହୋଇଗଲା । ମୁଦିକୁ ଖୁବ୍ ପସନ୍ଦ କଲା ମଧ୍ୟ ।

କିଛିଦିନ ବିତିଗଲା । ଦିନେ ଶାରଦା ଆ-ନନ୍ଦକୁ ପଚାରିଲା, "ପୁଅ, ମୁଁ ତ୍ରଙ୍କ ଭିତରେ

ହଜାରେ ଟଙ୍କା ଲୁଚାଇ ରଖିଥିଲି; ଏବେ ପାଉନାହିଁ । ସେ ଟଙ୍କା ତୁ ନେଇଛୁ'କି ?"

ଏତକ ଟଙ୍କା ଶାରଦା ପୁଅବାହାଘରରେ ଦାବି କରି ପାଇଥିବା ଯୌତୁକର କିଛି ଅଂଶ ।

"ହଁ ମା, ମୁଁ ଶ୍ୱଶୁରଘରକୁ ଯିବାବେଳେ ହଜାରେ ଟଙ୍କା ନେଇ ଯାଇଥିଲି । ଆଗରୁ ମୁଁ କହି ନ ଥିଲି କି ଶ୍ୱଶୁରଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ? ଆଉ ତୁ ତ ମୋ ହାତରେ ମୁଦି ଦେଖିବାକୁ ଚାହୁଁଥିଲୁ । ମୁଁ ଯାହା ଭାବୁଥିଲି, ସେଇଆ ହେଲା । ଶ୍ୱଶୁରଙ୍କର ସେହି ଅବସ୍ଥା ଦେଖି ମୁଁ ଆମରି ଟଙ୍କାରେ ମୁଦି ବନେଇ ନେଇଆସିଲି ।" ଆନନ୍ଦ କହିଲା ।

ଶାରଦା ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଆରେ ମୋ ଟଙ୍କାରେ ମୁଦି କରିବାକୁ ତୋ ମନ ଗଲା କିପରି ?"

"ମା, ତୁ ହିଁ କହିଥିଲୁ ଯେ ମା'ର ଇଚ୍ଛାକୁ ପିଲାମାନେ ପୂରଣ କରନ୍ତୁ !" ଆନନ୍ଦ ପଚାରିଲା ।

"ଆଚ୍ଛା ଠିକ୍ ଅଛି । ତୁ ମୋ ଇଚ୍ଛା ଏଇଭଳି ପୂରଣ କରିଛୁ ? ଏବେ ସେ ମୁଦିକୁ ବିକି ମୋ ଟଙ୍କା ମୋତେ ଆଣିଦେ ।" ଶାରଦା କହିଲା ।

"ମା, ତୁ କ'ଣ ଭାବିଛୁ ସେ ମୁଦି ଏବେ ବି ମୋ ପାଖରେ ଅଛି ? ତୋ ବୋହୂ ରେଶମ ଶାଢ଼ି ପିନ୍ଧିବାକୁ ଇଚ୍ଛା କଲା । ତେଣୁ ମୁଦି ବିକି କରି ଶାଢ଼ି ନେଇଆସିଲି ।" ଆନନ୍ଦ ବୁଝାଇଲା ।

"ଆନନ୍ଦ, ତୁ ଇଏ କ'ଣ କଲୁ ?" ଏ କଥା କହି ଶାରଦା ମୁଣ୍ଡ ପିଟିଦେବାକୁ ବସିଲା ।

"ମା', ତୁ ନା କହିଥିଲୁ କି ସ୍ତ୍ରୀର ଇଚ୍ଛା ସ୍ୱାମୀ ପୂରଣ କରିବା ଉଚିତ ?" ଆନନ୍ଦ ଓଲଟା ପ୍ରଶ୍ନ କଲା ।

ଏ ପ୍ରଶ୍ନର କିଛି ଉତ୍ତର ଆଉ ଶାରଦା ପାଇଁ ନ ଥିଲା । ସେ ବହୁତ ଭାବି ଭାବି ଅଗତ୍ୟା ନୀରବ ରହିଲା ।





# ଦେବୀ ଭାଗବତ

ବିଷ୍ଣୁ ଏବଂ ଲକ୍ଷ୍ମୀ ଏକ ଅଶ୍ୱଦମ୍ପତି ରୂପେ ଅରଣ୍ୟ ମଧ୍ୟରେ କିଛି କାଳ ବାସ କରିବା ଅନ୍ତେ ବୈକୁଣ୍ଠ ଉଦ୍ଦେଶ୍ୟରେ ପ୍ରସ୍ଥାନ କଲେ । କିନ୍ତୁ ସେମାନଙ୍କର ସୁନ୍ଦର ଶିଶୁପୁତ୍ରଟିକୁ ସେମାନେ ଅରଣ୍ୟ ଭିତର ଦେଇ ବହମାନ ନଦୀ କୂଳରେ ଛାଡ଼ିଦେଇଗଲେ ।

କଳ କଳ ନଦୀ ବହି ଚାଲିଥାଏ । କୂଳବର୍ତ୍ତୀ ପୁଷ୍ପଲତାମାନେ ସେ ସୁକୁମାର ଶିଶୁକୁ ଦେଖି ତା' ଉପରକୁ ମୃଦୁମୃଦୁ ପବନରେ ଢଳିପଡ଼ୁଥାନ୍ତି । ପକ୍ଷୀମାନେ ବୃକ୍ଷ ଡାଳରେ ଥାଇ ସବ ସବ ବଣ ଭିତରେ ଗୋଟିଏ ଦିବ୍ୟ ଶିଶୁର ଉପସ୍ଥିତିରେ ଆନନ୍ଦ ଓ ବିସ୍ମୟ ପ୍ରକାଶ କରୁଥାନ୍ତି ।

କେତେକ୍ଷଣ ପରେ ଅରଣ୍ୟ ଉପର ଦେଇ ଆକାଶମାର୍ଗରେ ଗତି କରୁଥିବା ଏକ ବିଦ୍ୟାଧର ଦମ୍ପତିଙ୍କ ଆଖି ସେ ଶିଶୁ ଉପରେ ପଡ଼ିଲା । ତତ୍କ୍ଷଣାତ୍ ଦୁହେଁ ସେଠାରେ ଅବତରଣ କଲେ । ବିଦ୍ୟାଧରଟିର ନାମ ଚମ୍ପକ ଏବଂ ବିଦ୍ୟାଧରୀର ନାମ ମଦାଳସା । ଚମ୍ପକ ସେହି ଅସାଧାରଣ ତେଜସ୍ୱୀ ଶିଶୁଟିକୁ ଉଠାଇନେଇ ମଦାଳସା ହାତରେ ଦେଲେ । ମଦାଳସା ବାତ୍ସଲ୍ୟ-ବିଗଳିତା ହୋଇ ବାରଂବାର ଶିଶୁକୁ ଚୁମ୍ବନ କଲେ ଏବଂ ଚମ୍ପକକୁ ପଚାରିଲେ, "ଏ ଶିଶୁ କିଏ ? ଏଠାରେ କିଏ ଏହାକୁ ପରିତ୍ୟାଗ କରି ଯାଇଥାଇପାରେ ?"

ଚମ୍ପକ ପୁଲକଭରେ ବାରମ୍ବାର ଶିଶୁଟିକୁ

ହୈହୟବଂଶର ଉତ୍ପତ୍ତି



ନିରୀକ୍ଷଣ କରୁଥାନ୍ତି । ସେ ଅପରୂପ ଶିଶୁ ଯେ କୌଣସି ସାଧାରଣ ନରନାରୀଠାରୁ ସମ୍ଭବ ନୁହେଁ ଏ କଥା ସେ ବୁଝିପାରୁଥାନ୍ତି ।

"କିଏ ଏହାର ଜନକ ଜନନୀ ?" ମଦାଳସା ପୁଣି ପ୍ରଶ୍ନ କଲେ ।

"ମୋ ପକ୍ଷରେ ସେ କଥା କହିବା ସମ୍ଭବ ନୁହେଁ । ଇନ୍ଦ୍ରଙ୍କୁ ପଚାରିଲେ ସେ ହୁଏତ କହିପାରିବେ ।" ଚମ୍ପକ ଉତ୍ତର ଦେଲେ ।

ତତ୍ପରେ ଦୁହେଁ ଶିଶୁଟିକୁ ଧରି ଇନ୍ଦ୍ରଙ୍କ ସମୀପରେ ଉପସ୍ଥିତ ହେଲେ ।

"ଅରଣ୍ୟ ମଧ୍ୟରେ ତମସା ନଦୀ କୂଳରୁ ଆମେ ଏ ଶିଶୁକୁ ଉଦ୍ଧାର କରିଛୁ । ଏହାର ପରିଚୟ କ'ଣ ଆମେ ଜାଣୁନା । ଆପଣ କହିଲେ ଆମେ ଏହାକୁ ପ୍ରୀତିଭରେ ଲାଳନ-ପାଳନ କରିବୁ ।" ଚମ୍ପକ ଇନ୍ଦ୍ରଙ୍କୁ କହିଲେ ।

ଇନ୍ଦ୍ର ଶିଶୁଟିକୁ ଲକ୍ଷ୍ୟ କରି ଦେଖିଲେ । ତାଙ୍କ ମୁହଁରେ ରହସ୍ୟମୟ ହସ ଫୁଟିଉଠିଲା ।

"ଏ ଶିଶୁ ଲକ୍ଷ୍ମୀନାରାୟଣଙ୍କ ସନ୍ତାନ । ଯଯାତିଙ୍କ ପୁତ୍ର ତୁର୍ବସୁ ଏ ସନ୍ତାନର ଦାୟିତ୍ୱ ଗ୍ରହଣ କରିବା ହେଲା ବିଧିର ବିଧାନ । ତୁମେ ଯାଇ ତୁରନ୍ତ ଏହାକୁ ତମସା ତୀରରେ ଛାଡ଼ିଦେଇ ଆସ । ନ ହେଲେ ବିଷ୍ଣୁଙ୍କ ଇଙ୍ଗିତ ଅନୁଯାୟୀ ତୁର୍ବସୁ ଅବିଳମ୍ବେ ଆସି ଏଠାରେ ପହଞ୍ଚି-ଯିବେ ।" ଇନ୍ଦ୍ର ବୁଝାଇଦେଲେ ।

"ସତେ ? ବିଧିର ବିଧାନ କ'ଣ ସାମାନ୍ୟ ପରିବର୍ତ୍ତନ ହୋଇ ପାରିବ ନାହିଁ ? ତୁର୍ବସୁ ଏ ଶିଶୁର ଦାୟିତ୍ୱ ନ ନେଇ ଆମେ ନେଲେ କ୍ଷତି କ'ଣ ?" ମଦାଳସା ପଚାରିଲେ ।

ଚମ୍ପକ ମଧ୍ୟ ଭାବବିଗଳିତ ହୋଇ କହିଲେ, "ଏହାର ଯେପରି ଯତ୍ନ ନେବା ବିଧେୟ ଆମେ ସେଥିରେ ସାମାନ୍ୟ ମାତ୍ର ତ୍ରୁଟି କରିବୁ ନାହିଁ, ଏ ପ୍ରତିଶ୍ରୁତି ମୁଁ ଆପଣଙ୍କୁ ଦେଉଛି ।"

"ବିଦ୍ୟାଧର ହୋଇ ତୁମେ ଦୁହେଁ ବିଧିର ବିଧାନକୁ ଆନ କଲା ଭଳି କଥା କହୁଛ କିପରି ? ଶିଶୁଟିକୁ କିଛି ସମୟ ସକାଶେ ବଣ ଭିତରୁ ଅନ୍ୟତ୍ର ନେଇଆସିବା ହେଲା ତୁମ ପାଇଁ ବିଧିର

ବଧାନ । କାରଣ ଦଳେ ମତ୍ତହସ୍ତୀ ବର୍ତ୍ତମାନ ନଦୀକୂଳକୁ ସେମାନଙ୍କ ପିପାସା ନିବାରଣ କରିବା ନିମନ୍ତେ ଆସିଛନ୍ତି । ତେବେ ସେମାନେ ଫେରିଯିବାକୁ ଉଦ୍ୟତ ହେଲେଣି । ଯାଅ । ଶିଶୁକୁ ଯେଉଁ ସ୍ଥାନରୁ ଆଣିଛ, ସେହିଠାରେ ଥୋଇଦେଇ ଆସ ।” ଇନ୍ଦ୍ର ନିର୍ଦ୍ଦେଶ ଦେଲେ ।



ଚମ୍ପକ କାଳବିଳମ୍ବ ନ କରି ଶିଶୁଟିକୁ ଯେଉଁ ସ୍ଥାନରୁ ଉଠାଇଆଣିଥିଲେ ପୁଣି ସେହିଠାରେ ଛାଡ଼ିଦେଇ ଆସିଲେ ।

ଭୁବନ୍ସୁଙ୍କ ଆଗରେ ଯଥା ସମୟରେ ଆବିର୍ଭୂତ ହେଲେ ବିଷ୍ଣୁ । ଭୁବନ୍ସୁ ଗଭୀର ଆନନ୍ଦ ଏବଂ କୃତଜ୍ଞତାରେ ବିଷ୍ଣୁଙ୍କ ବନ୍ଦନା ଓ ପୂଜା କଲେ ।

ବିଷ୍ଣୁ ଭୁବନ୍ସୁଙ୍କୁ ପ୍ରଶ୍ନ କଲେ, “ତୁମର କୌଣସି ବର ଲୋଡ଼ା ?”

“ମୋର ଲୋଡ଼ା ଗୋଟିଏ ପୁତ୍ର-ସନ୍ତାନ ।” ଭୁବନ୍ସୁ ସବିନୟ ଉତ୍ତର ଦେଲେ ।

“ତୁମେ ମୋହର ସନ୍ତାନକୁ ପୁତ୍ର ରୂପେ ପାଇବ । ତମସା ଏବଂ କାଳନ୍ଦୀ ନଦୀର ସଙ୍ଗମ ସ୍ଥଳକୁ ଏହିକ୍ଷଣି ଚାଲିଯାଅ । ସେଠାରେ ସେ ଶିଶୁ ବିଦ୍ୟମାନ ।” ବିଷ୍ଣୁ ଜଣାଇଲେ ।

ଭୁବନ୍ସୁ ଅତ୍ୟନ୍ତ ପ୍ରସନ୍ନ ହେଲେ । ବିଷ୍ଣୁ ଅଦୃଶ୍ୟ ହେବା ପରେ ସେ ଯାଇ ଯଥା ସ୍ଥାନରେ ପହଞ୍ଚିଲେ ଏବଂ ସେ ଶିଶୁକୁ ଦେଖି ଅପଲକ ନେତ୍ରରେ ତାକୁ ଅନାଇରହିଲେ ।

“ବତ୍ସ ! ବହୁ ତପସ୍ୟା ଫଳରେ ଆଜି ବିଷ୍ଣୁଙ୍କ କରୁଣାରୁ ତୋତେ ପାଇଲି !” ଏହା କହି ଭୁବନ୍ସୁ ଶିଶୁକୁ କୋଳ କରିନେଲେ ଏବଂ ନିଜ ନଗରକୁ ପ୍ରତ୍ୟାବର୍ତ୍ତନ କଲେ ।

ନଗରୀ ବ୍ୟାପି ଉତ୍ସବ ଲାଗିଗଲା । ରାଜପ୍ରାସାଦ ଦୀପମାଳା ଓ ପୁଷ୍ପାଦିରେ ସଜ୍ଜିତ ହେଲା । ରାଣୀଙ୍କ ଆନନ୍ଦ କହିଲେ ନ ସରେ । ଶିଶୁର ନାମ ହେଲା ହୈହୟ ତଥା ଏକବୀର । ଯଥା ସମୟରେ ହେଲା ଶିଶୁର ଅନ୍ନପ୍ରାଶନ । ଦ୍ୱାଦଶ ବର୍ଷରେ ହେଲା ଉପନୟନ । ତା’ପରେ ଏକ ଢଙ୍ଗରେ ଶିଶୁକୁ ଦିଆହେଲା ବେଦଶିକ୍ଷା ଏବଂ



ଅନ୍ୟ ଦିଗରେ ଧନୁର୍ବିଦ୍ୟା ଶିକ୍ଷା ।

ତା'ପରେ ରାଜା ଭୁବନ୍ୟୁ ରାଣୀଙ୍କ ସହ ବାନପ୍ରସ୍ଥ ଅବଲମ୍ବନ କରିବାକୁ ସ୍ଥିର କରି ଏକବୀରଙ୍କୁ ସିଂହାସନରେ ଅଭିଷିକ୍ତ କଲେ । ବଣ ଭିତରେ ଦେବୀ ଦୁର୍ଗାଙ୍କୁ ଧ୍ୟାନ କରି କରି ରାଜାରାଣୀ ସ୍ୱର୍ଗବାସୀ ହେଲେ । ସେ ସମ୍ବାଦ ପାଇ ହୈହୟ ପାଳିତ ମାତାପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ କଲେ । ତା'ପରେ ପ୍ରଜାଙ୍କ ମଙ୍ଗଳଜନକ କାର୍ଯ୍ୟରେ ମନୋନିବେଶ କଲେ ।

ତାଙ୍କ ରାଜୁତିରେ ଦେଶରେ ଶାନ୍ତିଶୃଙ୍ଖଳା ବିରାଜମାନ କଲା । ଦେଶ ସବୁଦିଗରୁ ସମୃଦ୍ଧିର ସ୍ୱାଦ ଉପଭୋଗ କଲା । ବଣ ପର୍ବତରେ ଅବଶ୍ୟ ଦାନବ, ରାକ୍ଷସମାନେ ରହୁଥାନ୍ତି, କିନ୍ତୁ ରାଜା ଏକବୀରଙ୍କ ଭୟରେ ସେମାନେ ଜନପଦରେ ଉପଦ୍ରବ କରିବାକୁ ସାହସ କରୁ ନ ଥାନ୍ତି । ଦସ୍ୟୁଭୟ ଦେଶରୁ ପୂରାପୂରି ଦୂର ହୋଇଥାଏ । ଲୋକେ ନିରାପଦରେ ବିଚରଣ କରୁଥାନ୍ତି ।

ଦିନେ ଏକବୀର ଗଙ୍ଗା କୂଳେ କୂଳେ ବହୁ ଦୂର ଚାଲିଗଲେ । ଗୋଟିଏ ସ୍ଥାନରେ ପୁଷ୍ପଲତା ଶୋଭିତ ଅନେକଗୁଡ଼ିଏ କୁଡ଼ିଆ ଥିବାର ସେ ଦେଖିଲେ । ସେଠାରେ ମୁନିଋଷିମାନେ ରହୁଥିଲେ । ପ୍ରସନ୍ନଚିତ୍ତରେ ସେ ଅଞ୍ଚଳରେ ବୁଲୁ ବୁଲୁ ଏକବୀର ଜଣେ ନାରୀଙ୍କୁ ଦେଖିଲେ । ସେ ଥିଲେ ସୌମ୍ୟଦର୍ଶନା; କିନ୍ତୁ କୌଣସି ଚିନ୍ତାରେ ସେ ବିଷଣ୍ଣ ଦିଶୁଥିଲେ ।

"ଆପଣ କିଏ ? ଦେବୀ ନା ମାନବୀ ? ଆପଣଙ୍କ ଚିନ୍ତାର ହେତୁ କ'ଣ ? ମୋତେ ଯଦି ତାହା କହିବେ, ତେବେ ତାହା ଦୂର କରିବା ନିମନ୍ତେ ମୁଁ ନିଶ୍ଚେ ଯଥା ସାଧ୍ୟ ଚେଷ୍ଟା କରିବି; ଚିନ୍ତାର ହେତୁ ଭୌତିକ ହେଉ ବା ଆଧିଭୌତିକ ହେଉ ।" ଏକବୀର ପ୍ରଶ୍ନ କଲେ ।

ନାରୀଜଣକ କହିଲେ, "ମୁଁ ପୁଣ୍ୟାତ୍ମା ରାଜା ରଭ୍ୟ ଏବଂ ରାଣୀ ରୁକ୍ମରେଖାଙ୍କର ଅନ୍ତେବାସୀ । ମୋ ନାମ ଯଶୋବତୀ । ବହୁ ଦିନ ଧରି ରାଜାରାଣୀଙ୍କର ସନ୍ତାନସନ୍ତତି ନ ଥିଲେ ।

ରାଜା ଯଜ୍ଞ ଅନୁଷ୍ଠାନ କଲେ । ସୁନାର କଣ୍ଢେଇ ଭଳି କନ୍ୟାଟିଏ ଯଜ୍ଞକୁଣ୍ଡରୁ ଉଦ୍‌ଭୂତ ହେଲା । ସେ ଆନନ୍ଦଦାୟକ ମୁହୂର୍ତ୍ତ କଥା ଆଉ କ'ଣ କହିବ । ପୁରୋହିତ ସେ କନ୍ୟାର ନାମକରଣ କଲେ ଏକାବଳୀ । ରାଜାଙ୍କୁ ସେ ନିର୍ଦ୍ଦେଶ ଦେଲେ କି ପୁଅକୁ ଯେପରି ନାନା ବିଦ୍ୟା ଶିକ୍ଷା ଦେବା ବିଧି ରହିଛି, କନ୍ୟା ଏକାବଳୀକୁ ଯେପରି ସେ ସେହିପରି ଶିକ୍ଷା ଦେବେ ।

"ରାଜା ଓ ରାଣୀ ଆହ୍ଲାଦରେ ଶିଶୁକନ୍ୟାକୁ ପ୍ରାସାଦ ଭିତରକୁ ନେଇଗଲେ । ଅଚିରେ ରାଣୀ ଭୁଲିଗଲେ ଯେ କନ୍ୟାଟି ନିଜ ଗର୍ଭରୁ ଜାତ ନୁହେଁ, ଯଜ୍ଞକୁଣ୍ଡରୁ ପ୍ରାପ୍ତ । ସେ ସବୁ ସ୍ନେହ ଢାଳିଦେଇ ଏକାବଳୀକୁ ବଢ଼ାଇବାକୁ ଲାଗିଲେ । ଏକାବଳୀ ଅସାମାନ୍ୟା ସୁନ୍ଦରୀ ।

"ମୁଁ ହେଲି ରାଜା ରଭ୍ୟଙ୍କ ମନ୍ତ୍ରୀଙ୍କ କନ୍ୟା । ମୁଁ ରାଜକନ୍ୟାଙ୍କ ସମବୟସୀ ତଥା ତାଙ୍କର ସବୁଠାରୁ ସ୍ନେହର ସଖୀ । ରାଜକନ୍ୟାଙ୍କର ଶତଦଳ ପଦ୍ମ ପ୍ରତି ଗଭୀର ଆସକ୍ତି ଥାଏ । ସେ ପଦ୍ମ ସନ୍ଧାନରେ ଆମମାନଙ୍କୁ ନେଇ ପ୍ରାୟ ବଣ ମଧ୍ୟରେ ଅବସ୍ଥିତ ଥିବା ସରୋବରମାନଙ୍କ ସନ୍ଧାନରେ ଆସନ୍ତି । ରାଜା ଏହା ଜାଣି ଗଡ଼ ଭିତରେ ତିନିଚାରିଗୋଟି ବଡ଼ ବଡ଼ ପୁଷ୍କରିଣୀ ଖନନ କରି ତହିଁରେ ପଦ୍ମଗଛ ରୋପଣ କଲେ ଓ ରାଜକନ୍ୟାଙ୍କୁ କହିଲେ କି ଏଣିକି ଦୂରବର୍ତ୍ତୀ ସରୋବରମାନଙ୍କୁ ନ ଯାଇ ସେ ଗଡ଼ ଭିତରେ ଥିବା ପୁଷ୍କରିଣୀରୁ ପଦ୍ମ ଚୟନ କରିବେ ।





"କିନ୍ତୁ ଅଳଅଳ ରାଜକନ୍ୟା ବଣ ଭିତରକୁ ଯିବା ଅଭ୍ୟାସ ଛାଡ଼ିଲେ ନାହିଁ । ସୁଯୋଗ ପାଇବା ମାତ୍ରେ ଆମମାନଙ୍କ ଗହଣରେ ସେ ଦୂରବର୍ତ୍ତୀ ସ୍ଥାନମାନଙ୍କୁ ବୁଲିଯାଆନ୍ତି ।

"ପରିସ୍ଥିତିର ବଶବର୍ତ୍ତୀ ହୋଇ ରାଜା ଅଗତ୍ୟା ରାଜକନ୍ୟାଙ୍କ ନିରାପତ୍ତା ସକାଶେ ଏକଦଳ ସ୍ୱତନ୍ତ୍ର ସୈନ୍ୟ ନିଯୁକ୍ତ କଲେ । ରାଜକନ୍ୟା ପ୍ରାସାଦରୁ ବାହାରିବା ମାତ୍ରେ ସେ ସୈନ୍ୟଦଳ ତାଙ୍କୁ ଅନୁସରଣ କରନ୍ତି ।

"କିଛିଦିନ ଚାଲେ ଆମେ ନଦୀ କୂଳେ କୂଳେ ଏକ ମନୋରମ ସ୍ଥାନରେ ଆସି ପହଞ୍ଚିଲୁ । ସେତିକିବେଳେ ଦଳେ ଅପ୍ସରା ନଦୀରେ ସ୍ନାନ କରୁଥିଲେ । ରାଜକନ୍ୟା ସେମାନଙ୍କୁ ଦେଖି ଖୁସୀ ହେଲେ ଓ ସେମାନେ ମଧ୍ୟ ରାଜକନ୍ୟାଙ୍କୁ ଦେଖି ଖୁସୀ ହେଲେ । ରାଜକନ୍ୟା ସେମାନଙ୍କ ସହ ନଦୀରେ ଜଳକ୍ରୀଡ଼ା କରୁଛନ୍ତି, ଆମେ ସଖୀମାନେ କୂଳରେ ଠିଆ ହୋଇଛୁ ଓ ସୈନ୍ୟମାନେ ଅଦୂରରେ ଅଛନ୍ତି, ଏହି ସମୟରେ କାଳକେତୁ ନାମକ ରାକ୍ଷସ ଆସି ସଦଳବଳେ ପହଞ୍ଚିଗଲା । ତାକୁ ଦେଖି ମୁଁ ରାଜକନ୍ୟାଙ୍କୁ ସତର୍କ କରିଦେଲି । ସେ ନଦୀରୁ ଉଠିଆସି ଆମ ଭିତରେ ଲୁଚିଗଲେ । ଅପ୍ସରାମାନେ ପଳାଇଗଲେ । ରାକ୍ଷସ ଆମ ପାଖକୁ ଆସି ରାଜକନ୍ୟାଙ୍କୁ ଭିଡ଼ିନେଇଯିବାକୁ ବାହାରିଲା । ଆମ ଦେହରକ୍ଷୀମାନେ ଆସି ବାଧା ଦେବାରୁ ରାକ୍ଷସ ସେମାନଙ୍କୁ ଅବଲୀଳା କ୍ରମେ ମାରିଦେଲା ।

"ଯେତେବେଳେ ଦେଖିଲି ଅନ୍ୟ ଉପାୟ ନାହିଁ, ସେତେବେଳେ ରାଜକନ୍ୟାଙ୍କୁ ବାଦ୍‌ଦେଇ ମୋତେ ଧରିନେଇଯିବାକୁ ମୁଁ ରାକ୍ଷସକୁ ନେହୁରା ହେଲି । କିନ୍ତୁ ଫଳ କିଛି ହେଲା ନାହିଁ । ସେ ରାଜକନ୍ୟାଙ୍କୁ ନେଇଗଲା ।

"ମୁଁ ରାଜକନ୍ୟାଙ୍କୁ ଅଟକାଇ ରଖିବା ପାଇଁ ଚେଷ୍ଟା କରନ୍ତେ ରାକ୍ଷସ ଖଡ୍‌ଗ ଉଞ୍ଚାଇ ମୋତେ ଓ ରାଜକନ୍ୟାଙ୍କୁ ପ୍ରାଣରୁ ମାରିଦେବାକୁ ଉଦ୍ୟତ ହେଲା ।

"ମୁଁ ରାଜକନ୍ୟାଙ୍କୁ ଅନୁସରଣ କଲି । ରାଜ-



କନ୍ୟାଙ୍କ ମନରେ ଟିକିଏ ଦମ୍ଭ ଆସିଲା । ସେ ମୋତେ ଧରି ରାକ୍ଷସ ସହ ଚାଲିଲେ ।

"ଦୂରରୁ ତା' ସୁନ୍ଦର ନବର ଦେଖାଇ ରାକ୍ଷସ କହିଲା କି ତାହା ଇନ୍ଦ୍ରପୁରୀ ତୁଳନାରେ ଊଣା ନୁହେଁ । ରାଜକନ୍ୟାଙ୍କୁ ସେ ସେହି ନବରର ରାଣୀ କରିବାକୁ ଚାହେଁ । କିନ୍ତୁ ରାଜକନ୍ୟା ତା' ପ୍ରସ୍ତାବରେ ସମ୍ମତ ହେଲେ ନାହିଁ ।

"ଆମେ ଦୁହେଁ ରାକ୍ଷସପୁରୀରେ ବନ୍ଦିନୀ ହେଲୁ । ରାକ୍ଷସ ବାରଂବାର ମୋତେ କହେ କି ମୁଁ ଯଦି ତାକୁ ବିଭା ହେବା ସକାଶେ ରାଜକନ୍ୟାଙ୍କୁ ସମ୍ମତ କରାଇପାରିବି - ତେବେ ସେ ମୋତେ ବହୁତ ପୁରସ୍କାର ଦେବ । କିନ୍ତୁ ମୁଁ ବା କାହିଁକି ସେ ଅପଚେଷ୍ଟା କରିବି !

"ଶେଷକୁ ଦିନେ ରାଜକନ୍ୟା ତାକୁ ଶୁଣାଇଦେଲେ କି ତାକୁ ବିବାହ କରିବା ତାଙ୍କ ପକ୍ଷରେ କଦାପି ସମ୍ଭବ ନୁହେଁ । କାରଣ ତାଙ୍କ ପିତା ତାଙ୍କୁ ହୈହୟ ନାମକ ତରୁଣ ରାଜାଙ୍କ ସହ ବିବାହ ଦେବାକୁ ମନେ ମନେ ସ୍ଥିର କରି ତାଙ୍କୁ ଜଣାଇଥିଲେ ଓ ରାଜକନ୍ୟା ତାହା ସ୍ୱୀକାର କରିଥିଲେ । ଥରେ ସେ ହୈହୟଙ୍କୁ ବିବାହ କରିବାକୁ ସ୍ୱୀକାର କରିନେବା ଅର୍ଥ ହୈହୟ ନ ଜାଣିଲେ ମଧ୍ୟ ସେ ତାଙ୍କର ପତ୍ନୀ । ଅତଏବ ସେ ଆଉ କାହା ପତ୍ନୀ ହେବେ କିପରି ? ରାକ୍ଷସ ଏହା ଶୁଣି ତର୍ଜନଗର୍ଜନ କରି ଚାଲିଗଲା ।"

ଯଶୋବତୀଙ୍କଠାରୁ ଏ ବୃତ୍ତାନ୍ତ ଶୁଣି ହୈହୟ ଆଶ୍ଚର୍ଯ୍ୟ ତଥା ପୁଲକିତ ହେଲେ । ସେ କହିଲେ, "ଭଦ୍ରେ ! ମୋହର ନାମ ହୈହୟ ତଥା ଏକବୀର । ମୋ ନାମଧାରୀ ଆଉ କୌଣସି ରାଜା ଥିବାର ମୋତେ ଜଣା ନାହିଁ ।"

ଯଶୋବତୀ ହସି କହିଲେ, "ଆପଣ ଯେ ହୈହୟ, ସେଥିରେ ମୋର ସନ୍ଦେହ ନାହିଁ । ଆପଣହିଁ ଆମ ରାଜକନ୍ୟାଙ୍କ ସକାଶେ ଉଦ୍ଦିଷ୍ଟ ବର । ଆମେ ବନ୍ଦିନୀ ରୂପେ ଥାଇ ଦେବୀ ମହାମାୟାଙ୍କୁ ଧ୍ୟାନ କଲୁ । ଗତ ରାତ୍ରରେ ଦେବୀ ମୋତେ ସ୍ୱପ୍ନରେ ଦେଖା ଦେଇ ଏ ସ୍ଥାନକୁ

ଆସିବା ସକାଶେ ନିର୍ଦ୍ଦେଶ ଦେଲେ ଏବଂ ଏଠାକୁ ଆସିଲେ ଆପଣଙ୍କ ସାକ୍ଷାତ ପାଇବ ବୋଲି କହିଲେ । ସଙ୍ଗେ ସଙ୍ଗେ ରାକ୍ଷସପୁରୀ ଭିତରୁ ସମସ୍ତଙ୍କ ଅଗୋଚରରେ କିପରି ବାହାରିଆସି-ହେବ, ସେ ମନ୍ତ୍ରଟି ମଧ୍ୟ କହିଦେଲେ ।"

"ରାଜକନ୍ୟାଙ୍କୁ ଉଦ୍ଧାର କରିବା ନିମନ୍ତେ ମୁଁ ଉତ୍କଣ୍ଠିତ । ତୁମେ ମୋତେ ରାକ୍ଷସପୁରୀକୁ ବାଟ ଦେଖାଅ ।" ହୈହୟ କହିଲେ ।

"ଧନ୍ୟବାଦ । ମହାଦେବୀଙ୍କଠାରୁ ମୁଁ ଶିଖି-ଥିବା ମନ୍ତ୍ରଟି ଆପଣଙ୍କର ସହାୟତା କରିବ । ତାହାରି ସାହାଯ୍ୟରେ ଆପଣ ସସୈନ୍ୟ ରାକ୍ଷସ-ପୁରୀ ଭିତରେ ପ୍ରବେଶ କରିପାରିବେ ।" ଯଶୋ-ବତୀ କହିଲେ ଏବଂ ତ୍ରିଲୋକତିଳକ ନାମକ ମନ୍ତ୍ର ହୈହୟଙ୍କୁ ଶିଖାଇଦେଲେ ।

ରାଜା ହୈହୟ ସୈନ୍ୟବାହିନୀ ଧରି ରାକ୍ଷସ-ପୁରୀ ଆକ୍ରମଣ କଲେ । କାଳକେତୁ ଅଗ୍ରଗାମୀ ସେନାମାନଙ୍କୁ ଦେଖି ଦୌଡ଼ିଯାଇ ରାଜକନ୍ୟାଙ୍କୁ ପଚାରିଲା, "ଏମାନେ କିଏ ଆସୁଛନ୍ତି ? ଯଦି ତୁମର ପିତା ହୋଇଥିବେ, ତେବେ ସେମାନଙ୍କୁ ସ୍ୱାଗତ କରିବି । ନ ହେଲେ ପ୍ରତିରୋଧ କରିବି ।"

"ମୁଁ ଏଠାରେ ବନ୍ଦିନୀ । କିଏ ଆସୁଛି ଜାଣିବି କିପରି ?" ରାଜକନ୍ୟା ଉତ୍ତର ଦେଲେ ।

ରୁହୁଁ ରୁହୁଁ ହୈହୟ ଦୁର୍ଗ ଭିତରେ ପ୍ରବେଶ କଲେ । ମନ୍ତ୍ର ପ୍ରଭାବରେ ରାକ୍ଷସମାନେ ପୂର୍ବରୁ ବାଧା ଦେଇପାରିଲେ ନାହିଁ । ଦୁର୍ଗ ଭିତରେ ଘମାଘୋଟ ଲଢ଼େଇ ହେଲା । ହୈହୟଙ୍କ ହାତରେ କାଳକେତୁର ମୃତ୍ୟୁ ହେଲା ।

ରାଜକନ୍ୟାଙ୍କୁ ନେଇ ହୈହୟ ତାଙ୍କ ପିତାଙ୍କ ପାଖରେ ପହଞ୍ଚାଇଦେଲେ । ମହାଡ଼ମ୍ବରରେ ହୈ-ହୟଙ୍କ ସହ ଏକାବଳୀଙ୍କ ବିବାହ ସମ୍ପନ୍ନ ହେଲା ।

ଏକବୀରଙ୍କ ପୁତ୍ରଙ୍କ ନାମ କୃତବୀର୍ଯ୍ୟ । ତାଙ୍କ ପୁଅ କାର୍ତ୍ତବୀର୍ଯ୍ୟ । ଏହିପରି ଭାବରେ ବିଖ୍ୟାତ ହୈହୟବଂଶର ଆରମ୍ଭ ହୋଇଥିଲା ।





# କପୋତକପୋତୀ

ପୁରାକାଳର କଥା । ବିଜୟନ୍ତ ନାମକ ରଜାଙ୍କର ରତ୍ନାବଳୀ ନାମକ କନ୍ୟା ଥିଲେ । ସେ ଯେତେବେଳେ ଛୋଟ ଶିଶୁଟିଏ, ସେତେବେଳେ ତା' ଧାଈ ତାକୁ ନିତି ଗୋଟାଏ କାହାଣୀ କହୁଥାଏ । ସେହି କାହାଣୀମାନଙ୍କରୁ ଗୋଟିଏ ହେଲା :

ଗୋଟାଏ ବଣରେ ବସା ବାନ୍ଧି ରହୁଥିଲେ କପୋତକପୋତୀ । ସେମାନଙ୍କର କେତୋଟି ଶାବକ ଥିଲେ । ଥରେ ବଣରେ ନିଆଁ ଲାଗିଗଲା । ପକ୍ଷିଶାବକମାନେ ଉଡ଼ିଶିଖି ନ ଥିଲେ । ଫଳରେ ସେମାନେ ପୋଡ଼ିମଲେ ।

କପୋତୀ ଦୁଃଖରେ ଭାଙ୍ଗିପଡ଼ି କହିଲା, "ଆଉ ବଞ୍ଚିରହି ଲାଭ କ'ଣ ? ଚାଲ ନିଆଁକୁ ଡେଇଁପଡ଼ି ପ୍ରାଣ ହାରିବା ।" କପୋତ ସେଥିରେ ରାଜି ହୋଇଗଲା । ଦୁହେଁ ନିଆଁ ଭିତରକୁ ଡେଇଁ-ପଡ଼ିବାକୁ ଉଦ୍ୟତ ହେବା ମୁହୂର୍ତ୍ତରେ କପୋତର ମନ ବଦଳିଗଲା । ସେ କହିଲା, "ପ୍ରାଣ ହାରି ଲାଭ କ'ଣ ? ଜୀଇଥିଲେ ହୁଏତ ପୁଣି ସନ୍ତାନ ଲାଭ କରିବା ।" ଏହା କହି ସେ ନିଆଁ ପାଖରୁ ଦୂରେଇଗଲା । କିନ୍ତୁ କପୋତୀ ତା' କଥା ନ ଶୁଣି ନିଆଁରେ ଝାସ ଦେଇ ମରିଗଲା ।

କାହାଣୀଟି କହିସାରି ଧାଈ ମନ୍ତବ୍ୟ ଦେଉ-ଥାଏ, "ପୁରୁଷଲୋକଙ୍କୁ କସ୍ମିନ୍‌କାଳେ ପରତେ ଯିବ ନାହିଁ ।"

ରାଜକନ୍ୟା ଗମ୍ଭୀର ମନଯୋଗ ସହକାରେ କାହାଣୀଟି ଶୁଣୁଥାନ୍ତି ଓ ଶୁଣିସାରି ପଚାରୁଥାନ୍ତି, "ଆଚ୍ଛା, କପୋତଟି ମରିଗଲା ?"

ହସି ହସି ଧାଈ କହୁଥାଏ, "ମରିଗଲା ଯେ, ତା'ପରେ କିନ୍ତୁ ରାଜକନ୍ୟା ରତ୍ନାବଳୀ ରୂପେ ଜନ୍ମ ନେଲା !"

(ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ)



କିଛି ବର୍ଷ ପରେ ଧାଈର ପରଲୋକ ହୋଇଗଲା । କିନ୍ତୁ ରାଜକନ୍ୟାଙ୍କ ମନରେ ଦୁଇଟି ଧାରଣା ବଦ୍ଧମୂଳ ହୋଇଯାଇଥାଏ । ଗୋଟିଏ ହେଲା, ପୁରୁଷଲୋକଙ୍କୁ ବିଶ୍ୱାସ କରିବ ନାହିଁ । ଦ୍ୱିତୀୟଟି ହେଲା, ସେ ପୂର୍ବଜନ୍ମରେ କପୋତୀ ଥିଲେ ।

ସେ ଟିକିଏ ବଡ଼ ହେବା ପରେ ରାଜାଙ୍କୁ କହିଲେ, "ବାପା ! ମୁଁ ଉଦ୍ୟାନ ଭିତରେ ଥିବା ପ୍ରାସାଦରେ ରହିବି । ମୋତେ କେବଳ ମୋ ସଖୀମାନେ ଜଗିବେ । କୌଣସି ପୁରୁଷଲୋକର ମୁହଁ ମୁଁ ଚାହିଁବି ନାହିଁ ।"

"ଝିଅ ! ସିଏ କି କଥା ? ମୁଁ ତ ତୋ ବିବାହ ସକାଶେ ବର ଖୋଜୁଛୁ !" ରାଜା କହିଲେ ।

"ବାପା, ମୁଁ କସ୍ମିନ୍ କାଳେ ବିଭା ହେବି ନାହିଁ । ଏ ଜନ୍ମରେ ନୁହେଁ କି ଆଗାମୀ କୌଣସି ଜନ୍ମରେ ନୁହେଁ । ରାଜକନ୍ୟା ଦୃଢ଼ ଭାବରେ କହିଲେ ।

ରାଜକନ୍ୟା ଉଦ୍ୟାନ-ପ୍ରାସାଦରେ ରହୁଥାନ୍ତି । ଦିନେ ଦୂରଦେଶର ଜଣେ ରାଜପୁତ୍ର ତାଙ୍କ ସଖା ସହିତ ଦେଶଭ୍ରମଣରେ ବାହାରି ସେ ଉଦ୍ୟାନ ପ୍ରାନ୍ତରେ ପହଞ୍ଚିଲେ । ଉଦ୍ୟାନର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଯେମିତି ସେମାନେ ଭିତରେ ପଶିଛନ୍ତି, ସେମିତି କେତେଜଣ ନାରୀ ଦୌଡ଼ିଆସି କହିଲେ, "ଏ ଉଦ୍ୟାନକୁ କୌଣସି ପୁରୁଷର ପ୍ରବେଶ ନିଷେଧ । ତୁମେ ଦୁହେଁ ବିଦେଶୀ ପରି ଦିଶୁଛ । ହୁଏତ ଏ ନିୟମ ଜାଣିନାହଁ । ତେଣୁ ତୁମକୁ ବନ୍ଦୀ ନ କରି ଛାଡ଼ିଦେଲୁ । ବାହାରିଯାଅ ।"

"ଆମେ ଏମିତି ନିୟମ କେଉଁଠି ଶୁଣି ନ ଥିଲୁ । କିଏ ଏହି ଉଦ୍ୟାନର ମାଲିକ ?" ପଚାରିଲେ ରାଜପୁତ୍ର ।

"ରାଜକନ୍ୟା ରତ୍ନାବଳୀ । ସେ ପୁରୁଷମାନଙ୍କୁ ଘୃଣା କରନ୍ତି । ଯାଅ !" ଉତ୍ତର ହେଲା ।

ଉଦ୍ୟାନରୁ ବାହାରିଯାଇ ରାଜପୁତ୍ର କହିଲେ, "ବନ୍ଧୁ ! ଇଏ ଗୋଟାଏ ମଜାର ପରିସ୍ଥିତି ।



ଜଣେ ରାଜକନ୍ୟା କାହିଁକି ପୁରୁଷଜାତିକୁ ଘୃଣା କରିବ ? ଚାଲ, ତା'ର ସେ ରୋଗ ଦୂର କରିବା ।"

ଦୁଇବନ୍ଧୁ ରାତିରେ ମାଲୁଣୀ ଘରେ ଅତିଥି ହେଲେ । ରାଜପୁତ୍ରଙ୍କ ସଖା ମାଲୁଣୀକୁ କହିଲେ, "ତୁମ ରାଜକନ୍ୟା କୁଆଡ଼େ ଭାରି ଅସୁନ୍ଦରୀ ?"

ମାଲୁଣୀ ରାଗିଯାଇ, କହିଲା, "ଚୁପ୍ ! ଆମ ରାଜକନ୍ୟା ଭଳି ସୁନ୍ଦରୀ ଦୁନିଆରେ ଅଛନ୍ତି ? ତେବେ ସେ ସୌନ୍ଦର୍ଯ୍ୟ ଦେଖିବାର ସୁଯୋଗ ହତଭାଗା ପୁରୁଷଲୋକେ ପାଇବେ ନାହିଁ ।"

ଦୁଇ ବନ୍ଧୁ ମାଲୁଣୀକୁ ନିଜ ପରିଚୟ ଦେଲେ । ମାଲୁଣୀ ଖୁସୀ ହୋଇ କହିଲା, "ଆହା, ରାଜ-କନ୍ୟାର ଏମିତି ପୁରୁଷଙ୍କୁ ଘୃଣା କରିବା ରୋଗ ଯୋଗୁ ରାଜାଙ୍କ ମନରେ କେତେ ଦୁଃଖ । ତୁମେ ଯଦି ରାଜକନ୍ୟାଙ୍କର ସେ ରୋଗ ଭଲ କରିପାରନ୍ତ, କେତେ ଭଲ ହୁଅନ୍ତା !"

ଦୁଇବନ୍ଧୁ ମାଲୁଣୀ ସହିତ ଘନିଷ୍ଠ ହୋଇ ରାଜକୁମାରୀଙ୍କ ଘୃଣାର କାରଣ—ଧାଈ କହି-ଥିବା ସେ ଗପ କଥା ଶୁଣିଲେ । ମାଲୁଣୀ ସହିତ ଦୁହିଁଙ୍କର ଅନେକ ଗୋପନ ପରାମର୍ଶ ହେଲା ।

ରାଜପୁତ୍ରଙ୍କର ଗୋଟିଏ ଭଲ ଗୁଣ ଥିଲା : ସେ ଅନେକ ପ୍ରକାର ଯାଦୁବିଦ୍ୟା ଜାଣିଥିଲେ । ଗୋଟିଏ ପଗଡ଼ି ଭିତରୁ କେତୋଟି କପୋତ, କେତୋଟି ପୁଷ୍ପଗୁଚ୍ଛ, ଫେଣାଏ କଦଳୀ ଏବଂ ଶେଷକୁ ଗୋଟାଏ ଠେକୁଆ ସେ ବାହାର କରି ପାରୁଥିଲେ । ପୁଣି ସେସବୁ ପଗଡ଼ି ଭିତରେ ଭର୍ତ୍ତି କରି ପଗଡ଼ି ମୁଣ୍ଡରେ ଲଗାଉଥିଲେ । ପର ମୁହୂର୍ତ୍ତରେ ତାଙ୍କ ସଖା ପଗଡ଼ିର ଗୋଟିଏ ପ୍ରାନ୍ତ ଟାଣିଦେବାରୁ ପଗଡ଼ି ଖୋଲିଯାଉଥିଲା । ସମସ୍ତେ ଦେଖୁଥିଲେ ତାହା ଖଣ୍ଡିଏ ସଫେଦ କନା ମାତ୍ର । ସେସବୁ କପୋତ ଓ ଅନ୍ୟାନ୍ୟ ଦ୍ରବ୍ୟର କ'ଣ ହେଲା କେହି ବୁଝି ପାରୁ ନ ଥିଲେ ।

ପରଦିନ ମାଲୁଣୀ ରାଜକନ୍ୟାଙ୍କ ପାଖରେ ପହଞ୍ଚି କହିଲା, "ଏ ସହରକୁ ଜଣେ ଯାଦୁକର ଆସିଛି । ତୁମେ ଯାହା ଦେଖିପାରିବ ନାହିଁ !



କାରଣ ତୁମେ ଯେମିତି ପୁରୁଷମୁହଁ ଦେଖନାହିଁ, ସେ ସେମିତି ନାରୀମୁହଁ ଦେଖେନାହିଁ ।"

ମାଲୁଣୀ ଜାଣିଥିଲା ଯେ ଯାଦୁଖେଳ ଦେଖିବା ପାଇଁ ରାଜକନ୍ୟା ବହୁତ ଭଲ ପାଉଥିଲେ । ରାଜକନ୍ୟା ରାଜାଙ୍କୁ କହିଲେ କି ବଗିଚାରେ ଯାଦୁଖେଳ ହେଲେ ସେ ଲୁଚିରହି ଦେଖିବେ । ରାଜା ଯାଦୁକର-ରୂପୀ ରାଜପୁତ୍ରଙ୍କୁ ଡକାଇଲେ । ତାଙ୍କ ସଖା କହିଲେ, "ମହାରାଜ ! ମୋ ଗୁରୁ ମହାନ୍ ଯାଦୁକର । କିନ୍ତୁ ତାଙ୍କ ବ୍ରତ ହେଲା, ସେ ନାରୀଙ୍କ ମୁହଁ ଦେଖନ୍ତି ନାହିଁ ।"

ଯାଦୁଖେଳ ବଗିଚାରେ ହେଲା ଓ ରାଜକନ୍ୟା ଲୁଚିରହି ଦେଖିଲେ । ଯାଦୁଖେଳ ଶେଷ ହେବା ପରେ ମାଲୁଣୀ ଶିଖାଇଥିବା ମତେ ରାଜା ଯାଦୁକରଙ୍କୁ ପଚାରିଲେ, "ଆଚ୍ଛା, ତୁମେ ନାରୀମୁହଁ ଦେଖନାହିଁ କାହିଁକି ?"

ରାଜପୁତ୍ର ଟିକିଏ ନୀରବ ରହି କହିଲେ, "ମହାରାଜ, ଆପଣଙ୍କ ଆଗରେ ମିଛ କହିବା ପାପ ହେବ । ସବୁ କହୁଛି । ପୂର୍ବଜନ୍ମରେ ମୁଁ ଗୋଟିଏ କପୋତ ଥିଲି । କପୋତୀ ଓ ମୁଁ ଗୋଟିଏ ବଣ ଭିତରେ ରହୁଥିଲୁ । ଥରେ ବଣରେ ଅଗ୍ନ୍ୟୁତ୍ପାତ ଘଟିବାରୁ ଆମ ଶାବକମାନେ ମରିଗଲେ । ମୁଁ ଓ ମୋ ସ୍ତ୍ରୀ ନିଆଁରେ ଝାସ ଦେବାକୁ ସ୍ଥିର କଲୁ । ଠିକ୍ ଝାସ ଦେବା ମୁହୂର୍ତ୍ତରେ ମୋ ସ୍ତ୍ରୀ କୁଆଡ଼େ ପଳାଇଗଲା । ମୁଁ ଝାସ ଦେଇ ମଲି । ମଣିଷଜନ୍ମ ପାଇ ମଧ୍ୟ ମୁଁ ପୂର୍ବଜନ୍ମ କଥା ଭୁଲିପାରିଲି ନାହିଁ । ସ୍ତ୍ରୀଜାତି ପ୍ରତି ମୋର ବିଶ୍ୱାସ ତୁଟିଯାଇଛି ।"

"ବଡ଼ ବିଚିତ୍ର କଥା ତ !" ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ ।

"ହଁ ମହିମା । ପୂର୍ବ ଜନ୍ମର ସେ ଅଭିଜ୍ଞତା ମୋ ମନରେ ଏପରି ରେଖାପାତ କରିଛି ଯେ ମୁଁ ସ୍ତ୍ରୀଲୋକଙ୍କ ମୁହଁକୁ ଅନାଇବାକୁ ମଧ୍ୟ ଘୃଣା କରେ । ମୋ କପୋତୀ ଏପରି କରିବ, ଏହା ମୁଁ କଳ୍ପନା ବି କରି ନ ଥିଲି ।" ରାଜପୁତ୍ର କହିଲେ ।

"ମିଥ୍ୟା କଥା । ମୁଁ ଝାସ ଦେଲି । ତୁମେ

ଖସି ପଳାଇଗଲ !” ବଡ଼ପାଟିରେ ଏହା କହି ରାଜକନ୍ୟା ବାହାରିଆସିଲେ ।

“ଓ, ତୁମେ ଏଠି ରାଜକନ୍ୟା ରୂପେ ଜନ୍ମ ନେଇଛ ପରା !” କହିଲେ ରାଜପୁତ୍ର । ତା’ପରେ କ୍ରୋଧର ଅଭିନୟ କରି ସେ ପୁଣି କହିଲେ, “ତୁମକୁ ଲଜ ନାହିଁ ? ମୁଁ ତୁମ ମନ ପରୀକ୍ଷା କରିବା ପାଇଁ ନଆଁରେ ଝାସଦେବା ବିଷୟରେ ଗୋଟାଏ ଯୁକ୍ତି ବାହାର କରିବା ମାତ୍ରେ ତୁମେ ପଳାଇଗଲ !”

“ମୁଁ ପଳାଇବି କାହିଁକି ? ମୁଁ ତ ନଆଁରେ ପଡ଼ି ମଲି । ରହିଗଲ ତୁମେ !” ରାଜକନ୍ୟା କହିଲେ ।

“ମୁଁ ରହିଗଲି ମାନେ ? ଏଣେତେଣେ ତୁମକୁ ନ ପାଇ କେଇ ମୁହୂର୍ତ୍ତ ପରେ ମୁଁ ତ ପ୍ରାଣ ବିସର୍ଜନ ଦେଲି !” ରାଜପୁତ୍ର କହିଲେ ।

ରାଜକନ୍ୟା ଅଧୋବଦନରେ ରହିଲେ । ତା’ପରେ କଣ୍ଠସ୍ୱର ନରମ କରି କହିଲେ, “ମୁଁ ମରିଗଲି ବୋଲି ତୁମ ମୃତ୍ୟୁ ଦେଖି ନ ପାରି ଭୁଲ ବୁଝିଥିଲି ! କିନ୍ତୁ ମନେ କର ନାହିଁ ।”

“ତୁମେ ବି ମୋତେ ଭୁଲ ବୁଝିବ ନାହିଁ । ପ୍ରବଳ ଧୂଆଁ ହେତୁ ତୁମେ ନଆଁରେ ଝାସ-ଦେବାଟା ମୁଁ .ଦେଖି ନ ପାରି ଧରିନେଲି ତୁମେ ପଳାଇଗଲ !” ରାଜପୁତ୍ର କହିଲେ ।

“ଏମିତି ଭୁଲ ବୁଝାବୁଝି ହୋଇଥାଏ । ଏଥର ତ ସବୁ ପରିଷ୍କାର ହୋଇଗଲା । ତେଣୁ ଏ ଜନ୍ମରେ ଦୁହେଁ ବିଭା ନ ହେବ କାହିଁ ?” ରାଜପୁତ୍ରଙ୍କ ସଖା କହିଲେ ।

ରାଜପୁତ୍ର ପ୍ରାସାଦରେ ରାଜାଙ୍କ ଅତିଥି ହୋଇ ରହିଲେ । ରାଜକନ୍ୟା ତାଙ୍କ ସହ ମିଶାମିଶି କରିବା ଭିତରେ ପୁରୁଷଜାତି ପ୍ରତି ତାଙ୍କ ଘୃଣା ତୁଟିଗଲା । ତେଣିକି ରାଜପୁତ୍ର ତାଙ୍କୁ ସବୁକଥା ଖୋଲି କହିଦେଲେ । କିନ୍ତୁ ସେତେବେଳକୁ ରାଜକନ୍ୟାଙ୍କ ରୋଗ ଦୂର ହୋଇଯାଇଥିଲା । ବିବାହ ପାଇଁ ସେ ଆଉ ଆପତ୍ତି କଲେ ନାହିଁ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

## ପୁରସ୍କୃତ ପରିଚୟୋକ୍ତି ଅକ୍ଟୋବର ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଛୋଟ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଅଗଷ୍ଟ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲଡିଙ୍ଗ୍ସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଜୁନ୍ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ସଜାଡ଼ି ରଖୁଛୁ ଭକତ ଅରଘ ତୁମ ଅରଚନା ପାଇଁ,

ଦ୍ୱିତୀୟ ଫଟୋ : ଟିକି ଜୀବନେ ମୋ ଟିକିଏ ଆଶିଷ ଦିଅ ହେ ଜଗତ ସାଇଁ ।

ପୁରସ୍କାର ବିଜୟିନୀ : ନିର୍ମଳା ମହାନ୍ତି, ଭୁବନେଶ୍ୱର ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

# ଆଖି ବୁଜିଲେହିଁ ଇଚ୍ଛା ପୂରଣ...



ଟଙ୍କା ଯଦି ଜମାଉଥିବ ତ ଇଚ୍ଛା ପୂରଣ ହେବ ! ତୁମର କଣ ଦରକାର ? ସାଇକେଲ ? [illegible] ସେଟ ? ନା ଗୋଟିଏ ଟ୍ରାନ୍‌ଜିଷ୍ଟର ? ଯେଉଁ ଯାହା ହେଉନା କାହିଁକି ତାହା ତୁମେ ନିଜ ଟଙ୍କାରେ କିଣି ପାରିବ । କାନାଡ଼ା ବ୍ୟାଙ୍କର ବାଳକ୍ଷେମ ଡିପୋଜିଟ୍ ସ୍କିମ୍ ତ ତୁମମାନଙ୍କ ପାଇଁହିଁ ଉଦ୍ଦିଷ୍ଟ । [illegible] ଏହି ବାଳକ୍ଷେମ ସେଭିଂସ ବାକ୍ସରେ ମନ ଖୁସିରେ ଖୁଚୁରା ପଇସା ଜମାଇ ଯାଅ । ଭର୍ତ୍ତି ହୋଇଗଲେ କାନାଡ଼ା ବ୍ୟାଙ୍କର ଶାଖାରେ ଜମାଦେଇ ପୁଣି ନୂଆ କରି ଜମାଇବା ଆରମ୍ଭ କର । ଦେଖିବ, ତୁମର ଜମା ଟଙ୍କା ଆପଣା ବଢ଼ି ଯାଉଛି—କାରଣ ତା' ଉପରେ ଆମେ ତ ସୁଧ ଦେଉଛୁ ଟଙ୍କା ତୁମକୁ ଦେବୁ, ସେଥିପାଇଁ । ଦେଖିବ ଶୀଘ୍ର [illegible] କିଣିବାର ଟଙ୍କା ତୁମେ ପାଇ ଯାଉଛ ।

ଦେଖିଲ ତ—ଇଚ୍ଛା ପୂରଣର ଉପାୟ କେତେ ମଜାଦାର ! ତା' ଛଡ଼ା ଛୋଟବେଳୁ ଖେଳରେ ବି ଟଙ୍କା ଉପର ଜମାଇବାକୁ [illegible] ଶିଖିଗଲ, ନୁହେଁ କି ?

ବିଶଦ ଭାବରେ ଜାଣିବା ପାଇଁ କାନାଡ଼ା ବ୍ୟାଙ୍କର ନିକଟବର୍ତ୍ତୀ ଯେକୌଣସି ଶାଖାକୁ [illegible] । ଆମର ଅନ୍ୟାନ୍ୟ ଡିପୋଜିଟ ସ୍କିମ୍ ମଧ୍ୟରେ ରହିଛି କାମଧେନୁ, କଲ୍ୟାଣନିଧି ଓ [illegible] ।

## ବାଳକ୍ଷେମ ଡିପୋଜିଟ




## କାନାଡ଼ା ବ୍ୟାଙ୍କ




(ଏକ ରାଷ୍ଟ୍ରାୟତ୍ତ ବ୍ୟାଙ୍କ)

ସାରା ଦେଶରେ ଏହି ବ୍ୟାଙ୍କର
୧୨୦୦ ରୁ ଅଧିକ ଶାଖା ରହିଛି

maa CB4 Or-80







ବାପର ଟଙ୍କା ଯଉତୁକ ନାଗରା! ପୁଅ ପାଇଁ କାଞ୍ଚନ ସ୍ୱୟମ୍ବରର ଆହ୍ୱାନ...
ପୁଅମାନେ କର୍ତ୍ତବ୍ୟପାଳନ କାହାର କରନ୍ତୁ!
ଦେଖନ୍ତୁ...



ବି. ନାଗିରେଡ୍ଡୀଙ୍କ ନୂତନ ପାରିବାରିକ ଚିତ୍ର

# ସ୍ୱୟମ୍ବର





ଏକ ପାରିବାରିକ ଚିତ୍ର — ପ୍ରକୃତରେ ଆପଣଙ୍କ ପାଇଁ!

JAHNAMAMU ( Oriya )    AUGUST 1980    Regd. No. M. 9098



